# ସାହିତ୍ୟରେ ରହସ୍ୟବାଦ

ସଂପାଦନା—

ଅଧ୍ୟାପକ ଶ୍ରୀ ପଠାଣି ପଟ୍ଟନାୟକ, ଏମ୍. ଏ.
ଶ୍ରୀ ଭୋଳାନାଥ ରାଉତ, ଏମ୍. ଏ.



ପ୍ରକାଶକ

**ଅଭ୍ୟୁଦୟ ସାହିତ୍ୟ ସମାଜ**

ରଘୁସାପାଟଣା, କଟକ-୧

ପ୍ରକାଶକାଳ

ଉଣେଇଶ ବାଷଠି, ଅକ୍ଟୋବର ଆଠ ତାରିଖ ।

ମୂଲ୍ୟ ଦୁଇଟଙ୍କା ପଚଶ ନୂଆ ପଇସା

# ପ୍ରସ୍ତାବନା—

ସମୟର ଅସରନ୍ତି ସ୍ରୋତରେ ବରଷଟିଏ ଅତି ସାମାନ୍ୟ । ସେଇ ବରଷକର ଇତିହାସକୁ ପାଥେୟ କରି 'ଅଭ୍ୟୁଦୟ ସାହିତ୍ୟ ସମାଜ' ଓଡ଼ିଶାର ସାହିତ୍ୟସେବୀ ଏବଂ ସାହିତ୍ୟପ୍ରେମୀମାନଙ୍କ ହାତରେ "ସାହିତ୍ୟରେ ରହସ୍ୟବାଦ" ପୁସ୍ତକଟି ଉପହାର ଦେବାକୁ ସାହସ କରୁଛି । ଏ ମୁଦ୍ରାଯନ୍ତ୍ର ଏବଂ ମୁଦ୍ରାସ୍ଫୀତିର ଯୁଗରେ ପୁସ୍ତକଟିଏ ପ୍ରକାଶ କରିବା ଏକ ଉଲ୍ଲେଖଯୋଗ୍ୟ ଘଟଣା ନୁହେ । ମାତ୍ର "ସାହିତ୍ୟରେ ରହସ୍ୟବାଦ" ପୁସ୍ତକ ପ୍ରକାଶ କରିବାପାଇଁ ଏହି ଶିଶୁ ସାହିତ୍ୟ ଅନୁଷ୍ଠାନର ସହଯୋଗୀବୃନ୍ଦ ଯେଉଁ ଉଦ୍ୟମ କରିଛନ୍ତି, ତାହା ଅତ୍ୟନ୍ତ ଗୌରବପୂର୍ଣ୍ଣ । ବହୁକାରଣରୁ ଓଡ଼ିଶାରେ ସାଂସ୍କୃତିକ ଜୀବନ ସୁସ୍ଥ ଏବଂ ସଜୀବ ନୁହେଁ । ଯେଉଁ କେତୋଟି ଅନୁଷ୍ଠାନ ଏ ଦିଗରେ କାର୍ଯ୍ୟ କରୁଛନ୍ତି, ସେମାନେ ନାନା ପ୍ରତିକୂଳ ସମସ୍ୟାର ସମ୍ମୁଖୀନ । ପ୍ରବୀଣ ସାହିତ୍ୟିକମାନଙ୍କ ମଧ୍ୟରେ ଯୋଗାଯୋଗର ଅଭାବରୁ କୌଣସି ସଂଗଠନମୂଳକ କାର୍ଯ୍ୟ ଏ ଦେଶରେ ସଫଳ ହୋଇପାରୁନାହିଁ । ହୀନ ରାଜନୀତି ଏବଂ ସ୍ୱାର୍ଥପ୍ରବଣତା ଯୋଗୁ ସଂସ୍କୃତିର ଉଦାର ପରିବେଶ କେବଳ କଳଙ୍କିତ ନୁହେଁ, ତାହାର ବିକାଶ ମଧ୍ୟ ଅତ୍ୟନ୍ତ ମନ୍ଥର । ତେଣୁ ସାଧାରଣ ସାହିତ୍ୟ ଅନୁଷ୍ଠାନଗୁଡ଼ିକ କେବଳ ସଭାସମିତି ଏବଂ ପ୍ରଚାରମୁଖୀ ଆଲୋଚନାରେ ଯେବେ ନିଜର କାର୍ଯ୍ୟ ପରିସର ଆବଦ୍ଧ ରଖନ୍ତି, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ସାଂସ୍କୃତିକ ଜୀବନର ଏହି ଜଡ଼ତା ବିରୁଦ୍ଧରେ

ସଂଗ୍ରାମ କରିବାର ଦୁଃସାହସ ଅଭ୍ୟୁଦୟ ସାହିତ୍ୟସମାଜ ଗ୍ରହଣ କରିନାହିଁ । ବରଂ ଏହି ବୈଶିଷ୍ଟ୍ୟହୀନ ନିସ୍ତରଙ୍ଗ ସାହିତ୍ୟିକ ପାଣିପାଗ ମଧ୍ୟରେ ନିଜର କ୍ଷୁଦ୍ର ଚେଷ୍ଟାରେ ଯଦି କିଛି ନୂତନ ପଥ ଖୋଜି ପାରିଲା, ତାହାହେଲେ ଅନୁଷ୍ଠାନ ପକ୍ଷରେ ତାହାହିଁ ପରମ ସନ୍ତୋଷର କାରଣ ହେବ । ଏହି ଉଦ୍ଦେଶ୍ୟରେ ସର୍ବଭାରତୀୟ ସାହିତ୍ୟର ଏକ ନିର୍ଦ୍ଦିଷ୍ଟ ଧାରା ସଂପର୍କରେ ଆଲୋଚନା କରିବାପାଇଁ ନିଷ୍ପତ୍ତି ଗ୍ରହଣ କରାଯାଇଥିଲା । ଦୀର୍ଘ ଏକବର୍ଷର ଲେଖାଲେଖି, ଅନୁରୋଧ ଏବଂ ବିରକ୍ତିକର ତାଗିଦା ପରେ ମଧ୍ୟ ଭାରତର ପ୍ରତ୍ୟେକ ସାହିତ୍ୟିକ-ଭାଷାର ଲେଖା ସଂଗ୍ରହ କରାଯାଇ ପାରିଲା ନାହିଁ । ତେଣୁ "ଭାରତୀୟ ସାହିତ୍ୟରେ ରହସ୍ୟବାଦ" ଶିରୋନାମା ବଦଳରେ କେବଳ "ସାହିତ୍ୟରେ ରହସ୍ୟବାଦ" ନାମ ଦେଇ ମିଳିଥିବା ଲେଖାଗୁଡ଼ିକ ପ୍ରକାଶ କରାଗଲା । ଏହି ସଂକଳନରେ ଅଧ୍ୟାପକ ବିବେକାନନ୍ଦ ମୁଖର୍ଜୀ, ଅଧ୍ୟାପକ ଏମ୍‌. ଏସ୍‌. ହାସାନ୍, ଅଧ୍ୟାପକ ଦେବପ୍ରସାଦ ପଟ୍ଟନାୟକ, ଅଧ୍ୟାପକ ସୁରେଶଚନ୍ଦ୍ର ନନ୍ଦ, ଅଧ୍ୟାପକ ସଦାନନ୍ଦ-ରାମାନୁଜ ଦାସ ଏବଂ ଅଧ୍ୟାପକ ପଠାଣି ପଟ୍ଟନାୟକ ଯଥାକ୍ରମେ ବଙ୍ଗଳା, ପାର୍ସି, ଇଂରାଜୀ, ହିନ୍ଦୀ, ସଂସ୍କୃତ ଏବଂ ଓଡ଼ିଆ ଭାଷାର ରହସ୍ୟବାଦ ସମ୍ପର୍କରେ ଆଲୋଚନା କରିଛନ୍ତି । "ସାହିତ୍ୟସମାଜ" ସେମାନଙ୍କୁ ଆନ୍ତରିକ ଧନ୍ୟବାଦ ଅର୍ପଣ କରୁଅଛି । ତେଲୁଗୁ, ତାମିଲ, ଆସାମୀ ପ୍ରଭୃତି ସାହିତ୍ୟର ଲେଖାଗୁଡ଼ିକ ମିଳିଲେ ଏହି ପୁସ୍ତକର ଦ୍ୱିତୀୟ ଖଣ୍ଡ ଭାବରେ ତାହା ପ୍ରକାଶିତ ହେବ ବୋଲି ପରିକଳ୍ପନା ରହିଛି ।

ସାହିତ୍ୟରେ ଆଜିକାଲି ବିଭିନ୍ନ ବିଭାଗରେ ସଂକଳନ ପ୍ରକାଶ ପାଉଛି । ଫଳରେ ଆଲୋଚନାର କ୍ଷେତ୍ର ଅଧିକ ସୁଗମ ହେବା ସ୍ୱାଭାବିକ । ଏ ପାଠ୍ୟପୁସ୍ତକ ଯୁଗରେ ବିଭିନ୍ନ ଲେଖକଙ୍କର ଗଳ୍ପ,

ଏକାଙ୍କିକା ଅବା ପ୍ରବନ୍ଧ ସଂକଳନ ପ୍ରକାଶ କରିବା ଏକ ସାଧାରଣ କଥା ହୋଇ ଗଲାଣି । ତେବେ ଏକ ନିର୍ଦ୍ଦିଷ୍ଟ ଆଦର୍ଶର ସାହିତ୍ୟ ସଂକଳନ କେତେକ ପରିମାଣରେ ଉଲ୍ଲେଖଯୋଗ୍ୟ । ଏହାଦ୍ୱାରା ଆଲୋଚନାର କ୍ଷେତ୍ର ପ୍ରସାରିତ ହୁଏ । ଏଣୁ ଏକ ନିର୍ଦ୍ଦିଷ୍ଟ ଆଦର୍ଶକୁ କେନ୍ଦ୍ର କରି ବିଭିନ୍ନ ଭାରତୀୟ ସାହିତ୍ୟର ଆଲୋଚନା (ସାହିତ୍ୟରେ ରହସ୍ୟବାଦ) ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ନୂତନ ପ୍ରଚେଷ୍ଟା ବୋଲି ସ୍ୱୀକାର କରିବାକୁ ହେବ । ଯେତେଦୂର ମନେହୁଏ ପଡ଼ୋଶୀ ପ୍ରାନ୍ତୀୟ ସାହିତ୍ୟଗୁଡ଼ିକରେ ଏ ପ୍ରକାର ଉଦ୍ୟମ ହୋଇଛି ବୋଲି ଆମ୍ଭମାନଙ୍କୁ ଜଣାନାହିଁ । ଏହି ସଂକଳନରେ "ଇଂରାଜୀ ସାହିତ୍ୟରେ ରହସ୍ୟବାଦ ଶୀର୍ଷକ ଆଲୋଚନାଟି ହୁଏତ ଅନେକଙ୍କ ମନରେ ପ୍ରଶ୍ନ ସୃଷ୍ଟି କରିପାରେ । କାରଣ ତାହା ଇଂରାଜ ସାହିତ୍ୟର ଭାରତୀୟ ଲେଖକମାନଙ୍କ ରଚନାର ଆଲୋଚନା ନୁହେଁ । ଆଧୁନିକ ଭାରତୀୟ ସାହିତ୍ୟରେ ଇଂରାଜୀ ସାହିତ୍ୟର ପ୍ରଭାବ ଅପ୍ରତିହତ । ଏହି କାରଣରୁ ଇଂରାଜୀ ସାହିତ୍ୟର ଆଲୋଚନାଟି ତୁଳନାତ୍ମକ ବିଚାରରେ ଅନୁକୂଳ ଭାବନା ସୃଷ୍ଟି କରିବ ବୋଲି ଆମ୍ଭମାନଙ୍କର ହୃଦ୍‌ବୋଧ ହେଲା । ପାର୍ସି ସାହିତ୍ୟ ବିଷୟକ ଆଲୋଚନାଟି ଲେଖକ ଇଂରାଜୀରେ ଲେଖି ଦେଇଥିଲେ । ସେହି ଲେଖାଟିର ଓଡ଼ିଆ ଭାଷାନ୍ତର କରିଛନ୍ତି ଆମର ସହଯୋଗୀ ବନ୍ଧୁ ରବୀନ୍ଦ୍ରକୁମାର ପ୍ରହରାଜ ଏବଂ ପୂର୍ଣ୍ଣଚନ୍ଦ୍ର କର । ବଙ୍ଗଳା ସାହିତ୍ୟ ବିଷୟକ ଲେଖାଟି ବଙ୍ଗଳା ଭାଷାରେ ଲେଖାଯାଇଥିଲା । ଓଡ଼ିଆ ଏମ. ଏ ଶ୍ରେଣୀର ଛାତ୍ରୀ କୁମାରୀ ଗୀତାଦାସ ତାହାର ଓଡ଼ିଆ ଭାଷାନ୍ତର କରି ଦେଇଥିବାରୁ ଆମର ଧନ୍ୟବାଦର ପାତ୍ରୀ ।

ପରିଶେଷରେ ଓଡ଼ିଶାର ଲୋକପ୍ରିୟ ଜନନେତା ଶ୍ରୀଯୁକ୍ତ ବୀରେନ୍ ମିତ୍ରଙ୍କ ନିକଟରେ ଅଭ୍ୟୁଦୟ ସାହିତ୍ୟ ସମାଜ ନିଜର

।

ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଅଛୁ । କାରଣ ତାଙ୍କର ଆର୍ଥିକ ସାହାଯ୍ୟ ବ୍ୟତିରେକେ ଏ ସଂକଳନ ଏତେ ଶୀଘ୍ର ଆଲୋକକୁ ଆସିବା ଆଦୌ ସମ୍ଭବ ହୋଇ ନ ଥାନ୍ତା ।

ଭବିଷ୍ୟତରେ ଓଡ଼ିଶାର ରସିକ ପାଠକ, କଳାପ୍ରାଣ ସାହିତ୍ୟିକ ଏବଂ ଉଦାରଚେତା ଜନନେତାମାନଙ୍କର ଅକୁଣ୍ଠିତ ସହଯୋଗ ଏବଂ ସହାନୁଭୂତି କାମନା କରି ବିଦାୟ ନେଉଅଛୁ ।

ଦଶହରା
୮ । ୧୦ । ୧୯୬୨

ଶ୍ରୀ ପଠାଣି ପଟ୍ଟନାୟକ
ସଭାପତି
ଅଭ୍ୟୁଦୟ ସାହିତ୍ୟ ସମାଜ, କଟକ



# ଅଭ୍ୟୁଦୟ ସାହିତ୍ୟ ସମାଜ ତରଫରୁ

ସେ ହେଉଛି ୧୯୫୯ ମସିହା ଏପ୍ରିଲ ୨୭ ତାରିଖର ଏକ ପବିତ୍ର ସନ୍ଧ୍ୟା । ସେଦିନ କେତେକ ଉତ୍ସାହୀ ତରୁଣ ସାହିତ୍ୟସେବୀ ସଂକୀର୍ଣ୍ଣ ଦଳୀୟ ଆଲୋଚନାରୁ ମୁକ୍ତ ରହି ସାହିତ୍ୟ ଆଲୋଚନା କରିବା ପାଇଁ କଟକ ଟାଉନ୍‌ହଲଠାରେ ମିଳିତ ହୋଇଥାନ୍ତି । ଏହି ପ୍ରାରମ୍ଭିକ ମିଳନର ଉଦ୍ୟୋକ୍ତା ଥିଲେ ବିଜୟାନନ୍ଦ ଦାସ, ଗଙ୍ଗାଧର ନନ୍ଦ, ଭୋଳାନାଥ ରାଉତ, ନବକିଶୋର ପୃଷ୍ଟି, ବ୍ରହ୍ମାନନ୍ଦ ସିଂହ, କାଳନ୍ଦୀଚରଣ ଦାସ, ବଂଶୀଧର ସାହୁ ଏବଂ ନୀଳମଣି ସାହୁ । ସେହିଠାରେ ଜନ୍ମଗ୍ରହଣ କଲା "ଅଭ୍ୟୁଦୟ ପାଠଚକ୍ର" । ଏହି ଆଲୋଚନା ଚକ୍ରର ପ୍ରଥମ ଉତ୍ସବରେ ସଭାପତିତ୍ୱ କରିଥିଲେ ସୁପରିଚିତ ନାରୀ ନେତ୍ରୀ ଏବଂ ସାହିତ୍ୟିକା ଶ୍ରୀମତୀ ସରଳା ଦେବୀ ଏବଂ ଉଦ୍‌ଘାଟନ କରିଥିଲେ ଅଧ୍ୟାପକ ପଠାଣି ପଟ୍ଟନାୟକ । ଏହି ଉତ୍ସବରେ ପ୍ରଧାନ ଅତିଥି ଭାବରେ ଯୋଗ ଦେଇଥିଲେ ଲବ୍‌ଧପ୍ରତିଷ୍ଠ ନାଟ୍ୟକାର କାଳୀଚରଣ ପଟ୍ଟନାୟକ ଏବଂ ମୁଖ୍ୟବକ୍ତା ଭାବରେ ଉଦ୍‌ବୋଧନ ଦେଇଥିଲେ ଅଧ୍ୟାପକ ଶ୍ରୀନିବାସ ମିଶ୍ର ।

ଅନୁଷ୍ଠାନର ଧାରାବାହିକ ଆଲୋଚନା ସଭାରେ ପ୍ରତ୍ୟେକ ଥର ପାଇଁ ଜଣେ ଜଣେ ଆବାହକ ନିଯୁକ୍ତ ହେଉଥିଲେ ଏବଂ ଉପଦେଷ୍ଟା ଭାବରେ କାର୍ଯ୍ୟ କରୁଥିଲେ ଅଧ୍ୟାପକ ପଠାଣି ପଟ୍ଟନାୟକ । କ୍ରମଶଃ ଏହି ଶିଶୁ ଅନୁଷ୍ଠାନ ବହୁ ତରୁଣ ସାହିତ୍ୟସେବୀଙ୍କର ଆନ୍ତରିକ ଶ୍ରଦ୍ଧା ଓ ସହଯୋଗ ଲାଭ କରିଛି । "ଆଲୋଚନା ଚକ୍ର" ର ବିଭିନ୍ନ ବିଶେଷ ଅଧିବେଶନଗୁଡ଼ିକରେ ପଣ୍ଡିତ ବିନାୟକ ମିଶ୍ର, ଅଧ୍ୟାପକ ଶ୍ରୀଧର ଦାସ, ଡକ୍ଟର ଶ୍ରୀରାମଚନ୍ଦ୍ର ଦାସ; ଔପନ୍ୟାସିକ ଗୋପୀନାଥ ମହାନ୍ତି, ଡକ୍ଟର କୁଞ୍ଜବିହାରୀ ଦାସ, ଅଧ୍ୟାପକ ଜାନକୀ ମହାନ୍ତି (କ) ଅଧ୍ୟାପକ ଚିନ୍ତାମଣି ବେହେରା, ଅଧ୍ୟାପକ ଜାନକୀ ମହାନ୍ତି (ଖ), ଅଧ୍ୟାପକ କୁଳମଣି ମହାପାତ୍ର, ସୁସାହିତ୍ୟିକ ପ୍ରାଣନାଥ ମହାନ୍ତି,

ଅଧ୍ୟାପକ ଦେବେନ୍ଦ୍ର ମହାନ୍ତି, ଅଧ୍ୟାପକ ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା ପ୍ରମୁଖ ସାହିତ୍ୟିକ ଗଣ ଯୋଗଦାନ କରି ଆଲୋଚନାରେ ଅଂଶ ଗ୍ରହଣ କରିବା ସଙ୍ଗେ ସଙ୍ଗେ ଅନୁଷ୍ଠାନର ଉତ୍ତରୋତ୍ତର ବିକାଶ ଦିଗରେ ପ୍ରେରଣା ଯୋଗାଇ ଆସିଛନ୍ତି ।

ଅନୁଷ୍ଠାନକ ସ୍ୱାର୍ଥଦୃଷ୍ଟିରୁ ଅଭ୍ୟୁଦୟ ପାଠଚକ୍ରର ଗଠନତନ୍ତ୍ର ବଦଳାଇବାକୁ ପଡ଼ିଲା । ଏହି ଉଦ୍ଦେଶ୍ୟରେ ଗତ ୧୯୬୨ ମସିହା ମାର୍ଚ୍ଚ ୧୪ ତାରିଖ ଦିନ ଅନୁଷ୍ଠାନର ସାଧାରଣ ଅଧିବେଶନରେ ଏକ ନୂତନ ସମ୍ବିଧାନ ଗୃହୀତ ହୋଇ "ଅଭ୍ୟୁଦୟ ପାଠଚକ୍ର" "ଅଭ୍ୟୁଦୟ ସାହିତ୍ୟ ସମାଜ" ନାମରେ ନାମିତ ହେଲା ।

ଅନୁଷ୍ଠାନର ପ୍ରାରମ୍ଭରୁ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, ଅଧ୍ୟାପକ ଡକ୍ଟର ଶରତଚନ୍ଦ୍ର ବେହେରା, ଅଧ୍ୟାପକ ବିଜୟ ମହାପାତ୍ର ଓ ଅଧ୍ୟାପକ ମନୋଜ ଦାସ ପ୍ରମୁଖ ଆନ୍ତରିକ ସାହାଯ୍ୟ ଓ ସହାନୁଭୂତି ପ୍ରଦର୍ଶନ କରି ସାହିତ୍ୟ ସମାଜର ଧନ୍ୟବାଦର ପାତ୍ର ହୋଇଅଛନ୍ତି ।

ସୁଖର କଥା ଯେ ଅନୁଷ୍ଠାନର କେତେକ ସଭ୍ୟ ଛାତ୍ରଜୀବନ ସାଙ୍ଗ କରି ସାଧାରଣ କ୍ଷେତ୍ରରେ ପ୍ରବେଶ କରିଅଛନ୍ତି । ସ୍ମରଣ କରାଯାଇପାରେ ଯେ ସାହିତ୍ୟ ସମାଜର ସଭ୍ୟସଂଖ୍ୟା ସମ୍ବିଧାନରେ ଅତ୍ୟନ୍ତ ନିର୍ଦ୍ଦିଷ୍ଟ । ତେଣୁ ସେମାନଙ୍କର ଅକୁଣ୍ଠିତ ସହଯୋଗ ହିଁ ସାହିତ୍ୟ ସମାଜର ପ୍ରଗତି ପଥରେ ଏକମାତ୍ର ପାଥେୟ ।

ଆଜି ଏତିକି ।

ଦଶହରା
୮ । ୧୦ । ୬୨

ଶ୍ରୀ ଭୋଳାନାଥ ରାଉତ
ସମ୍ପାଦକ
ଅଭ୍ୟୁଦୟ ସାହିତ୍ୟ ସମାଜ

## ଅଭ୍ୟୁଦୟ ସାହିତ୍ୟ ସମାଜ ପରିଚାଳନା ସମିତି ଓ ସଭ୍ୟବୃନ୍ଦ

୧୯୭୨-୭୩

### ସଭାପତି

ଅଧ୍ୟାପକ—ପଠାଣି ପଟ୍ଟନାୟକ, ଏମ୍. ଏ.

### ସାଧାରଣ ସମ୍ପାଦକ

ଶ୍ରୀ ଭୋଳାନାଥ ରାଉତ, ଏମ. ଏ.

### ଯୁଗ୍ମ ସମ୍ପାଦକ

ଶ୍ରୀ କିଶୋରଚନ୍ଦ୍ର ମହାପାତ୍ର, ବି. ଏ.

### କାର୍ଯ୍ୟକାରୀ ସମିତି ସଭ୍ୟବୃନ୍ଦ

ନବକିଶୋର ପୃଷ୍ଟି, ଏମ. ଏ., ନଗେନ୍ଦ୍ରନାଥ ପ୍ରଧାନ, ଏମ. ଏ., ଶ୍ୟାମାପ୍ରସନ୍ନ ମିଶ୍ର, ବି.ଏ (ଅନର୍ସ), ଗଙ୍ଗାଧର ନନ୍ଦ, ବି. ଏ., ଯତୀନ୍ଦ୍ରନାଥ ମହାନ୍ତି, ବ୍ରଜସୁନ୍ଦର ମହାପାତ୍ର, ଏମ. ଏ., ବ୍ରହ୍ମାନନ୍ଦ ଦାସ, ଏମ. ଏ ।

### ସାଧାରଣ ସଭ୍ୟବୃନ୍ଦ

ବିଜୟାନନ୍ଦ ଦାସ ବି.ଏ, ପୂର୍ଣ୍ଣଚନ୍ଦ୍ର କର, ବି.ଏ. ( ଅନର୍ସ ), ସଦାନନ୍ଦ ପରିଡ଼ା, ଏମ. ଏ, କୃଷ୍ଣଚନ୍ଦ୍ର ମହାନ୍ତି, ଏମ. ଏ, କ୍ଷେତ୍ରବାସୀ ନାୟକ, ବି.ଏ, ରାମରଞ୍ଜନ ନନ୍ଦ, ବି.ଏ, ରବୀନ୍ଦ୍ରକୁମାର ପ୍ରହରାଜ ବି.ଏ, (ଅନର୍ସ), ବି.ଇଡ଼, ବ୍ରହ୍ମାନନ୍ଦ ସିଂହ, ବି.ଏ, ନୀଳମଣି ସାହୁ, ବିଏ. (ଅନର୍ସ), ବିଇଡ଼, ବଂଶୀଧର ସାହୁ, ବି.ଏ. ବି. ଇଡ଼, ବନବିହାରୀ ଦାସ, ଏମ୍. ଏ. ।

# ସୂଚୀ



———

# ସଂସ୍କୃତ ସାହିତ୍ୟରେ ରହସ୍ୟବାଦ

## ଶ୍ରୀ ସଦାନନ୍ଦ ରାମାନୁଜ ଦାସ

ସୃଷ୍ଟିର ପ୍ରାକ୍‌କାଳରୁ ମନୁଷ୍ୟଜାତି ତା'ର ସମ୍ମୁଖସ୍ଥ ବିରାଟ ବିଶ୍ୱକୁ ଦେଖି ବିସ୍ମିତ ଓ ଅଭିଭୂତ ହୋଇଆସିଛି । ସେଥିପାଇଁ କବିର ମାନସପଟରେ ଦେଖା ଦେଇଛି,"କୋଟି ସୂର୍ଯ୍ୟ, କୋଟି ଚନ୍ଦ୍ର, କୋଟି ଗ୍ରହତାରା, ଅଗଣିତ ଜୀବରାଶି ସ୍ତବ୍‌ଧ ବିସ୍ମୟ" ଇତ୍ୟାଦି । ଜଗତର ସୃଷ୍ଟି କିପରି ହେଲା ? ସ୍ରଷ୍ଟା କିଏ ? ଜୀବନ କ'ଣ ? ଇତ୍ୟାଦି ପ୍ରଶ୍ନ ମଧ୍ୟ ତାକୁ ବିଚଳିତ କରି ଆସିଛି । ଏହିସବୁ ପ୍ରଶ୍ନକୁ ପ୍ରକୃତରେ ସାର୍ବକାଳିକ ଓ ସାର୍ବଜନୀନ କୁହାଯାଇପାରେ । ବିଭିନ୍ନ ଯୁଗରେ ବିଭିନ୍ନ ଦେଶରେ ଏସବୁ ପ୍ରଶ୍ନର ସମାଧାନ ପାଇଁ ଯୁଗଯୁଗାନ୍ତ ଧରି ଚେଷ୍ଟା ଚାଲିଆସିଛି । ବିଭିନ୍ନ ଧର୍ମର ସ୍ୱରୂପରେ ଥିବା ଅନୈକ୍ୟ ସତ୍ତ୍ୱେ ବି ମୂଳଭୂତ ସାମ୍ୟ ମଧ୍ୟ ରହିଛି । ସବୁ ଧର୍ମର ଦାବୀ ଯେ, ସେମାନଙ୍କର ଆଧାରଭୂତ ସିଦ୍ଧାନ୍ତ କୌଣସି ଦିବ୍ୟପୁରୁଷ ସହ ସଂଶ୍ଳିଷ୍ଟ । ବେଦ, ତ୍ରିପିଟକ, ବାଇବେଲ୍, କୁରାନ୍‌ସହିତ ସବୁଥିରେ ସେହି କଥା । ଏସବୁ ଗ୍ରନ୍ଥର ପରମତତ୍ତ୍ୱ, ସତ୍ୟ, ଏକ ଅଜ୍ଞେୟ ଶକ୍ତି ସହିତ ଜଡ଼ିତ । ଆର୍ଯ୍ୟ ବେଦକୁ ଅପୌରୁଷେୟ କହନ୍ତି— "ନ କଶ୍ଚିତ୍ ବେଦକର୍ତ୍ତା ଚ ବେଦସ୍ମର୍ତ୍ତା ପିତାମହଃ ।" ଖ୍ରୀଷ୍ଟଧର୍ମାବଲମ୍ବୀଗଣ ଇସାମସୀହଙ୍କୁ ଈଶ୍ୱରଙ୍କ ପୁତ୍ର କହନ୍ତି । ମହମ୍ମଦ ଈଶ୍ୱରଙ୍କ ଦୂତ ଥିଲେ । ବୌଦ୍ଧମାନଙ୍କର ବିଶ୍ୱାସ, ତଥାଗତଙ୍କ ପରମତତ୍ତ୍ୱ ଓ

ସତ୍ୟର ପ୍ରତ୍ୟକ୍ଷାନୁଭୂତ ହୋଇଛି । ଏହି ସବୁ ପରମ ସତ୍ୟ ଓ ତତ୍ତ୍ୱ ସଂସାରର ସବୁଧର୍ମର ମୂଳାଧାର—ରହସ୍ୟବାଦ ।

ରହସ୍ୟବାଦ ଶବ୍ଦର ବିବିଧ ବ୍ୟାଖ୍ୟା ଦେଖାଯାଏ । ଅମର-କୋଷରେ ରହସ୍ୟ ଶବ୍ଦର ଅର୍ଥ ନିର୍ଜନ-ପର୍ଯ୍ୟାୟଭୁକ୍ତ । ବିବିକ୍ତ, ବିଜନ, ଛନ୍ନ, ନିଃଶଳାକ ପ୍ରଭୃତି । ମେଦିନୀକୋଷରେ ରହସ୍ୟର ଅର୍ଥ ତତ୍ତ୍ୱ, ଉପ, ଗୁହ୍ୟ । ରହସି ଏବଂ ରହସ୍ୟମ୍—ହଗାଦିତ୍ୱାତ୍ ଯତ୍ । ଗୋପନୀୟ ମର୍ମ; ନିର୍ଜନ; ଗୂଢ଼ତତ୍ତ୍ୱ ; ପରିହାସ । Encyclopaedia Britanicaରେ କୁହାଯାଇଛି—" A phase of thought, or rather perhaps of feeling which from its very nature is hardly susceptible of exact definition. It appears in connection with the endeavour of the human mind to grasp the divine essence or the ultimate reality of things and to enjoy the blessedness of actual communion with the Highest." ରହସ୍ୟବାଦର ପ୍ରକୃତ ସଂଜ୍ଞାନିରୂପଣ ଅତ୍ୟନ୍ତ କଷ୍ଟକର ହେଲେ ମଧ୍ୟ ସେହି ଚରମସତ୍ତା ସହିତ ସମ୍ପର୍କବୋଧ ଓ ସେହି ଆନନ୍ଦଲୋକର ପ୍ରତ୍ୟକ୍ଷାନୁଭୂତି ସହ ଓତପ୍ରୋତ ଭାବେ ଜଡ଼ିତ । ସେଥିପାଇଁ କୁହାଯାଇଛି—Mysticism maintaining the possibility of direct intercourse with this Being of being, intercourse not through any external media such as an historical revelation, oracles, answers to prayer and the like, but by a species of transfusion or identification, in which the individual becomes in very truth "Partaker of the divine nature", God ceases to be an object to him

and becomes an experience. ସେଥିପାଇଁ ଉପନିଷଦ୍ କହୁଛି, "ବ୍ରହ୍ମୈବ ସନ୍ ବ୍ରହ୍ମ ଅପ୍ୟେତେ ବିମୁକ୍ତଶ୍ଚ ବିମୁଚ୍ୟତେ"। Angelus Silesius କହନ୍ତି—"He who wants God must become God···God only can receive God."

ଅନ୍ତର୍ଦୃଷ୍ଟି ହିଁ ସେହି ରହସ୍ୟବାଦ ଉପରେ ଆଲୋକପାତ କରେ । କୁହାଯାଇଛି—It is a shifting, of centre from without to within. Intuition is the inner eye of intellect just as intellect is the inner eye of man. Mystical experience is the experience of the whole of life lighted by the light divine. There is a mental state which is richer than knowledge of the feeling and is a fusion of both into something which transcends both (The Evolution Indian Mystcism—K.S.R. Shastri.). ବିଶ୍ୱବିଶ୍ରୁତ ଦାର୍ଶନିକ ବାର୍ଟ୍ରାଣ୍ଡ ରସେଲଙ୍କ ମତରେ—The attempt to conceive the world as a whole by means of thought has been developed by the union and conflict of the mystical impulse and sceintific impulse, Mysticism prefers insight or intuition to reason. Such insight begins with the sense of a mystery unveiled.

ଅନ୍ତର୍ଦୃଷ୍ଟିଦ୍ୱାରା ମନୁଷ୍ୟ ଏକ ଆନନ୍ଦମୟ ଆଲୋକମୟ ରାଜ୍ୟର ସନ୍ଧାନ ପାଏ । ସେହି ଆନନ୍ଦମୟ ଆଲୋକମୟ ରାଜ୍ୟରେ ଆତ୍ମହରା ହୋଇଯାଏ । ରୂପଲୋକରୁ ବିଚ୍ଛିନ୍ନ ହୋଇ ଅରୂପର ସନ୍ଧାନ କରି କହେ—"ଆମି ରୂପସାଗରେ ଡୁବ୍ ଦିୟେଛି ଅରୂପ ରତନ ଆଶାୟ"—ରବୀନ୍ଦ୍ରନାଥ ।

ଏହି ଚିତ୍ତବୃତ୍ତି —ଏହି ଭାବବିହ୍ୱଳତା—ଏହି ଭାବବିମୁଗ୍‌ଧତାରୁ ଜନ୍ମ ଲଭିଛି, କାବ୍ୟକଳା । କୁହାଯାଏ—"It is out of such ecstasy that there comes a new creativeness—a power that visions and expresses the glory of things and also communicates such vision to others and bestows ecstasy. Greatest mystics have become greatest artists.

ରହସ୍ୟବାଦ, ତନ୍ତ୍ର ବା ଇନ୍ଦ୍ରଜାଲ ନୁହେଁ । ତନ୍ତ୍ର ବା ଇନ୍ଦ୍ରଜାଲ, ପ୍ରକୃତି ବା ଜଗତ ଉପରେ ବିଜୟ ହାସଲ କରିବାକୁ ଚାହେଁ । ରହସ୍ୟବାଦ ପ୍ରକୃତି ବା ଜଗତ ସହିତ ଏକୀଭୂତ ହୋଇ ତାହାର ମାଧ୍ୟମରେ ପ୍ରକୃତି ମନୁଷ୍ୟ ମଧ୍ୟରେ ଥିବା ଅଦୃଶ୍ୟ ଯୋଗ-ସୂତ୍ରର ସନ୍ଧାନ କରେ । ତନ୍ତ୍ର ବା ଇନ୍ଦ୍ରଜାଲରେ "ଅହଂ"ର ତୂର୍ଯ୍ୟନାଦ । ରହସ୍ୟବାଦରେ "ସୋଽହଂ"ର ଭାବ, "ଅହଂ"ର ବିନାଶ କୁହାଯାଇଛି । ଶାସ୍ତ୍ରୀଙ୍କ ମତରେ—" Magic or Tantra results in a man's being blooded with desire, pride and egoism. Mysticism results in victory over desire—(The Evolution of Indian Mysticism.)

ଜେମସ୍ ହେଷ୍ଟିଂସ ସ୍ୱକୀୟ ସମ୍ପାଦିତ "Encyclopaedia of Religion and Ethicsର ୯ମ ଖଣ୍ଡରେ ରହସ୍ୟବାଦ ଉପରେ ଆଲୋକପାତ କରିଛନ୍ତି । "Mysticism" ଶବ୍ଦର ଉତ୍ପତ୍ତି ବିଷୟରେ କହିଛନ୍ତି ଯେ, ଏହା ଦୁଇଟି ଜର୍ମାନ୍ ଶବ୍ଦରୁ ଉଦ୍ଭୂତ । ଶବ୍ଦ ଦୁଇଟି ହେଉଛି—Mystizismus ଯାହାର ଅର୍ଥ ହେଉଛି ଆଧିଭୌତିକ ଆଧିଦୈବିକ ଶକ୍ତିର ବିଗ୍ରହ । "the cult of supernatural for theosophical pursuits, for a spiritualistic exploitation of Psychical research." ଦ୍ୱିତୀୟ ଶବ୍ଦ ହେଲା—"Mystik ।" ଏହି

ଶବ୍ଦର, ଅର୍ଥ ହେଉଛି "ଜୀବ ଓ ସ୍ରଷ୍ଟାର ମହାମିଳନର ଅନୁଭୂତି। (Experience of a divine—human intercourse) ଉପରୋକ୍ତ ଦୁଇଟି ଶବ୍ଦକୁ ନେଇ "Mysticism" ଶବ୍ଦର ସୃଷ୍ଟି। ଏହି ହେତୁରୁ ଈଶ୍ୱରଙ୍କ ସହ ପ୍ରତ୍ୟକ୍ଷାନୁଭୂତି ବୋଲି ସିଦ୍ଧାନ୍ତ କରା-ଯାଇଛି—(1) The first hand experience of direct inter-course with God. (2) The theologico-metaphysical doctrine of the souls, possible union with Absolute Reality.

ରହସ୍ୟବାଦୀ ଅନୁଭୂତି କେବଳ ଶବ୍ଦାଭିବ୍ୟକ୍ତ ନୁହେଁ। କବୀରଙ୍କ ଭାଷାରେ ଘୁଙ୍ଗାର ଗୁଡ଼। (ଆତମ ଅନୁଭବ ଜ୍ଞାନକୀ ଜୋ କୋଈ ପୂଛେ ବାତ। ସୋ ଗୁଁଗା ଗୁଡ଼ ଖାଇ କେ କହେ କୌନ ମୁଖ ସ୍ୱାଦ)। ସମସ୍ତ ସମୟରେ ମନୁଷ୍ୟର ଭାବବହ୍ୱଳତା ତାକୁ ବିବଶ କରେ। ତା'ର ପରପ୍ରକାଶ କେବଳ ବାଚକ, ସଙ୍କେତ ବା ବ୍ୟଞ୍ଜନାରେ। ସେଥିପାଇଁ ଆମେ ମହାନ୍ ଋଷିମୁନିଙ୍କ ଭାଷାର ସାଙ୍କେ-ତିକତା ବୁଝିପାରୁନା। ଜର୍ମାନର ସର୍ବଶ୍ରେଷ୍ଠ ରହସ୍ୟବାଦୀ ଦାର୍ଶନିକ ଏକହାର୍ଟ ଈଶ୍ୱରାନୁଭୂତିର ଅନିର୍ବଚନୀୟତାର ଚର୍ଚ୍ଚା କରି ସେଣ୍ଟ ଅଗଷ୍ଟାଇନଙ୍କ ଉକ୍ତି ଉଦ୍ଧାର କରିଛନ୍ତି—"ଈଶ୍ୱରଙ୍କ ସମ୍ବନ୍ଧରେ କୌଣସି ବ୍ୟକ୍ତିର ସର୍ବୋତ୍ତମ ଅଭିବ୍ୟକ୍ତି ଏହା ହିଁ ହୋଇପାରେ ଯେ, ସେ ନିଜର ବୁଦ୍ଧିମତ୍ତାର ବଳ ସମ୍ବନ୍ଧରେ ମୌନ ଧାରଣ କରି ନେଉ।" ଆର୍ଯ୍ୟଋଷି ମଧ୍ୟ କହିଛନ୍ତି "ନେତି ନେତି" "ଅବାଙ୍ମନ-ସଗୋଚରଃ"।

ମାନବଜାତିର ପ୍ରାକ୍‌କାଳରୁ ମନୁଷ୍ୟ ମନରେ ଏକ ଅପୂର୍ଣ୍ଣତା ଓ ବିସ୍ମୟତାର ଭାବ ରହିଆସିଛି। ଏହି ଅପୂର୍ଣ୍ଣତାରୁ ଏକ

ସ୍ଥାୟୀ ଉଦ୍‌ବିଗ୍ନତା ଜନ୍ମ ନେଇଛି । ଫଳସ୍ୱରୂପ ସଂସାରର ସମସ୍ତ ଦର୍ଶନ, ବିଜ୍ଞାନ ଓ କଳାର ଜନ୍ମ । ଭୌତିକ ଜଗତର ଅଗଣିତ ବିଷମତାକୁ ଦେଖି ମନୁଷ୍ୟ ନିରନ୍ତର ପ୍ରୟାସ କରିଆସିଛି, ଏ ସବୁର ମୂଳ କାରଣ କୌଣସି ସର୍ବଶକ୍ତିମାନ୍ ଐକ୍ୟସତ୍ତା । ସେହି ଐକ୍ୟସତ୍ତା ହିଁ ତା'ର ସର୍ବପ୍ରକାର ଅପୂର୍ଣ୍ଣତାରେ ପୂର୍ଣ୍ଣଚ୍ଛେଦ ଆଣିପାରେ । ରବୀନ୍ଦ୍ରଙ୍କ ଭାଷାରେ—"ଦ୍ୱୈତ ଭାବର ଅସ୍ତିତ୍ୱରେ ମନ ଅଦ୍ୱୈତର ସନ୍ଧାନ କରେ", × × × ଏକ ହିଁ ଅନେକ ରୂପରେ ଦେଖା ଦିଏ । ଉପନିଷଦ୍‌ରେ ମଧ୍ୟ ଏହି ଭାବ "ଏକୋଽହଂ ବହୁ ସ୍ୟାମ୍ ପ୍ରଜାୟେୟ ।" ଏହିସବୁ ଚିନ୍ତନ, ମନନ, ଅନ୍ୱେଷଣ, ଅଧ୍ୟୟନରୁ ଉତ୍ପତ୍ତି ଲଭିଛି, ରହସ୍ୟବାଦ ।

ପୃଥିବୀର ରହସ୍ୟବାଦୀମାନଙ୍କ ପଥ ଭିନ୍ନଭିନ୍ନ ହେଲେ ମଧ୍ୟ ଶାସ୍ତ୍ରୀୟ ତର୍କଜାଲରେ ମନୁଷ୍ୟ ପରମ ସତ୍ୟର ଅନୁଭବ କରିପାରିବ ନାହିଁ ବୋଲି ଏକମତ "ଅଚିନ୍ତ୍ୟାଃ ଖଲୁ ଯେ ଭାବା-ନତାଂସ୍ତର୍କେଣ ଯୋଜୟେତ୍ ।" ଗୌଡ଼ୀୟ ସମ୍ପ୍ରଦାୟର ଭାବନା "ବିଶ୍ୱାସେ ମିଳୟ କୃଷ୍ଣ ତର୍କେ ବହୁ ଦୂର" ଏହାରି ଅନୁରୂପ । ମାନବମସ୍ତିଷ୍କ ଭୌତିକ ପରିସ୍ଥିତିର କ୍ରିୟା ପ୍ରତିକ୍ରିୟାର ପରିଣାମ । ଏଣୁ ସାଧକ, କବି ଭୌତିକ ପରିସ୍ଥିତିର ସୀମିତ ମାଧ୍ୟମରେ ସୀମା-ତୀତର ସନ୍ଧାନରେ ସମ୍ପୂର୍ଣ୍ଣରୂପେ ପହଞ୍ଚିପାରେ ନାହିଁ । ଅଭୀଷ୍ଟ ଉଦ୍ଦେଶ୍ୟରେ ପହଞ୍ଚିବାର ଏକମାତ୍ର—ମାର୍ଗ ଅନ୍ତର୍ଜ୍ଞାନ, ଅନ୍ତର୍ଦୃଷ୍ଟି ।

ରହସ୍ୟବାଦୀ ସାଧକ ବା କବି ବ୍ରହ୍ମ, ଜୀବ ଜଗତର ସ୍ୱରୂପ ଓ ପାରସ୍ପରିକ ସମ୍ବନ୍ଧରେ ତର୍କକର୍କଶ ବ୍ୟାଖ୍ୟା ନ କରି ଅନ୍ତର୍ଦୃଷ୍ଟି ଉପରେ ନିର୍ଭର କରେ । ଅନୁଭୂତିରେ ବିଶ୍ୱାସ କରେ, କହେ— "If not asked, I know. If asked I know not."

ସ୍ୱାନୁଭୂତିଜନ୍ୟ ଜ୍ଞାନପ୍ରାପ୍ତି ପରେ ତା'ର ହୃଦୟରେ ଏକ ଅଖଣ୍ଡ ଅବିଚଳ ଆତ୍ମବିଶ୍ୱାସ ପ୍ରତିଷ୍ଠିତ ହୁଏ । ସେହି ବିଶ୍ୱାସରୁ ଯେଉଁ କଳାର ଜନ୍ମ—ସେଥିରେ ଏପରି ଏକ ଅସାଧାରଣ ଶକ୍ତି ଥାଏ ଯାହା ଫଳରେ ପାଠକ ବା ଶ୍ରୋତା କଳାକାରର ସତ୍ୟୋପଲବ୍ଧିକୁ ସ୍ୱୀକାର କରିବାକୁ ବିବଶ ହୁଏ । ମିଥ୍ୟା ବୋଲି ଉପହାସ କରିପାରେ ନା । ସେ ଯେତେବେଳେ କହେ "ଗୋପନ ଅନ୍ଧକାରେ ତିନ ଆସେ, ତିନ ଆସେ"—ସେ କଥାକୁ କେହି ଅବିଶ୍ୱାସ କରେ ନା । ସ୍ୱାଗତ କରେ ।

ପ୍ରସ୍ତୁତ ପ୍ରବନ୍ଧରେ ଏ ପର୍ଯ୍ୟନ୍ତ ରହସ୍ୟବାଦ ସମ୍ବନ୍ଧରେ ସାଧାରଣ ଧାରଣା ଦେବା ପରେ ପ୍ରାସଙ୍ଗିକ ବିଷୟବସ୍ତୁ ଆଲୋଚନା କରିବା ସର୍ବାଦୌ ଆବଶ୍ୟକ । ଗ୍ରୀକ୍, ହିନ୍ଦୁ, ମୁସ୍ଲିମ୍, ଚୀନ ଦେଶୀୟ ରହସ୍ୟବାଦର ପୂର୍ବରୁ ଆଦିମାନବର ରହସ୍ୟବାଦ ସମ୍ବନ୍ଧରେ କୁହାଯାଏ ଯେ, ପ୍ରଥମେ ଭୂତପ୍ରେତ ଓ ଈଶ୍ୱରଙ୍କ ଭାବନା ପ୍ରଚଳିତ ଥିଲା ।,(Idea of Gods, ghosts and spiritual powers was in vogue—Enyclopaedia of Religion and Ethics.) ଚୀନ୍‌ଦେଶର ଲାଓସିଆନ୍ ବିଶ୍ୱରଧାରାରେ ଭାରତୀୟ ବ୍ରହ୍ମସମ୍ବନ୍ଧୀୟ ବିଶ୍ୱରଧାରା ସହ ସାମ୍ୟ ପରିଦୃଷ୍ଟ ହୁଏ । ଖ୍ରୀଷ୍ଟପୂର୍ବ ୬ଷ୍ଠ ଶତକରେ ଲାଓସେ "ତାଓ (Tao,)" ସମ୍ବନ୍ଧରେ କହିଛନ୍ତି ଯେ ତାଓର ଅର୍ଥ ଚରମ ସତ୍ତା —"Tao is ultimate reality, anterior, higher than heaven. Tao brings tranquility and Contentment which can never be acquired by the worldly minded. ଲାଓସେଙ୍କ ମତରେ ଯେଉଁ ଲୋକ ଭୌତିକ ବନ୍ଧନରୁ ମୁକ୍ତ ସେହି କେବଳ ଆଧ୍ୟାତ୍ମିକ ଆନନ୍ଦର ଅଧିକାରୀ । "Only one who is externally free from earthly pas-

sions can achieve the spiritual essence and pleasure."
( See Lao-tse—A Study in Chinese philosophy
—by T. Watlers. )

ଖ୍ରୀଷ୍ଟଧର୍ମାବଲମ୍ବୀମାନେ ଖ୍ରୀଷ୍ଟଙ୍କ ସ୍ୱଜୀବନର ଆତ୍ମାନୁଭୂତିରୁ ରହସ୍ୟବାଦୀ ଧାରଣା ସଂଗ୍ରହ କରିଥାନ୍ତି । ସେଥିପାଇଁ କୁହାଯାଇଛି—"He reveals true mystical experience, an interior sense of life which explores and possesses new depths of reality. All his words and acts are penetrated with an infinite depth of experience and are fused with the warmth and the intimacy of direct fellowship with God. (Encyclopaedia—see R. M. Jones).

ପ୍ରୋଟେଷ୍ଟାଣ୍ଟମାନଙ୍କର ରହସ୍ୟାତ୍ମକ ଧାରଣା ରୋମାନ-କାଥଲିକ୍‌ଚର୍ଚ୍ଚରୁ ଉଦ୍ଭୂତ ରୋମାନ୍‌କାଥିଲିକ୍ ବିଗ୍ରହଧାରାଦ୍ୱାରା ପ୍ରଭାବିତ । ମଧ୍ୟଯୁଗୀୟ ରହସ୍ୟବାଦୀ ରଚନା ହେଉଛି—"The Imitation of Christ' ଏବଂ Theologia Germanica". ପ୍ରାଚୀନ ପ୍ରୋଟେଷ୍ଟାଣ୍ଟ ମତାବଲମ୍ବୀଗଣ ଏହି ଗ୍ରନ୍ଥକୁ ଅତି ଆଦରରେ ଗ୍ରହଣ କରନ୍ତି । ଲୁଥର, ଥିଓଲଜିଆ ଜର୍ମାନିକାର ପ୍ରଶଂସକ ।

ରହସ୍ୟବାଦର ସଂଜ୍ଞାନୁସାରେ ବିଚାର କଲେ ବୌଦ୍ଧଧର୍ମରେ ରହସ୍ୟବାଦ ନାହିଁ । ମନୀଷୀ Rhys Davids ଙ୍କ ମତରେ "There is no Absolute according to all the orthodox forms of Buddhist thought whether Mahayana or Heenayana. There is no mysticism in Buddhism if the word mysticism is understood quite strictly.

ପୃଥିବୀର ସବୁ ଧର୍ମ ବିଚାର ବେଳେ ଭାରତୀୟ ବୈଦିକ କାଳରୁ ଏ ପର୍ଯ୍ୟନ୍ତ ରହସ୍ୟାତ୍ମକ ଧାରଣାର ବିବେଚନା ଆବଶ୍ୟକ । ରହସ୍ୟବାଦର କ୍ରମିକ ବିକାଶ ଆଲୋଚନା କଲେ ପ୍ରଥମେ ବୈଦିକ କାଳର ଆଲୋଚନା ଅନସ୍ୱୀକାର୍ଯ୍ୟ । ବୈଦିକକାଳୀନ ଋଷି ପ୍ରକୃତିର ପ୍ରତ୍ୟକ୍ଷ ସାନ୍ନିଧ୍ୟରେ ଜୀବନଯାପନ କରିଛି । ତତ୍‌ପୂର୍ବରୁ ମନୁଷ୍ୟ ପ୍ରକୃତିକୁ ଶକ୍ତିର ଉଦ୍‌ଗମ ସ୍ଥଳ ବୋଲି ମନେକରି ଆସିଛି; ଉପାସନା ମଧ୍ୟ କରିଛି । ଉଷାର ବନ୍ଦନା କରିଛି । Hindu Mysticism ଗ୍ରନ୍ଥରେ M. N. Sarkar ଲେଖିଛନ୍ତି—"ସୀମିତ ଦୃଷ୍ଟିକୋଣରୁ ମନୁଷ୍ୟ ପ୍ରକୃତି ଉପରେ ପୂର୍ଣ୍ଣଭାବରେ ନିର୍ଭର କରି ଆସିଥିବାରୁ ପ୍ରକୃତି ପ୍ରତି ଏକ ରହସ୍ୟାତ୍ମକ ଭାବନା ସୃଷ୍ଟି କରିଆସିଛି ।" ବୈଦିକ ଋଷିର ମାନ୍ୟ ଦେବଗଣ ପ୍ରକୃତିର ଦିବ୍ୟରୂପ ଅଟନ୍ତି । ସେମାନଙ୍କ ମତରେ ପ୍ରକୃତି କେବଳ ଅଣୁପରମାଣୁର ସଙ୍ଗଠନ ମାତ୍ର ନୁହେଁ ; ସୂର୍ଯ୍ୟ, ଚନ୍ଦ୍ର, ବର୍ଷା, ଅଗ୍ନି, ବାୟୁର ପୂଜକ ସେ । ଭୟର ଭାବନାରେ ପ୍ରକୃତ ରହସ୍ୟାତ୍ମକ ପ୍ରବୃତ୍ତି ନ ଥାଏ । ଭକ୍ତି ଓ ସୌନ୍ଦର୍ଯ୍ୟାତ୍ମକ ପ୍ରେମଭାବନା ରହସ୍ୟବାଦର ଅଙ୍ଗ । ବୈଦିକ ଋଷିଗଣଙ୍କ ଉପରେ କେବଳ ପ୍ରକୃତିଶକ୍ତିର ପ୍ରଭାବ ଯେ ପଡ଼ିଥିଲା ତାହା ନୁହେଁ, ପ୍ରକୃତିର ସୌନ୍ଦର୍ଯ୍ୟ ମଧ୍ୟ ସେମାନଙ୍କୁ ଅନୁପ୍ରାଣିତ କରିଥିଲା । ସେମାନେ ଅନୁଭବ କରିଥିଲେ ଯେ, ସର୍ବବ୍ୟାପ୍ତ ଶାଶ୍ୱତ ସୌନ୍ଦର୍ଯ୍ୟର ଅନ୍ତରାଳରେ ଏକ ମହାଶକ୍ତି ବିଦ୍ୟମାନ ।

ଯଜୁର୍ବେଦର ବାଜସନେୟକରେ ଋଷି ସେହି ଶକ୍ତିକୁ ଇଙ୍ଗିତ କରିଛି—

କୋଽଦାତ୍
କସ୍ମା ଅଦାତ୍
କାମୋ ଅଦାତ୍
କାମାୟାଦାତ୍ । ୭।୪୮ ଇତ୍ୟାଦି ।

(Who was it that gave the gifts and whom was it to whom he gave).

ଋଗ୍ ବେଦରେ—

ଏକ ଏବାଗ୍ନିର୍ବହୁଧା ସମିଦ୍ଧ
ଏକଃ ସୂର୍ଯ୍ୟୋ ବିଶ୍ୱମନୁ ପ୍ରଭୂତଃ
ଏକୈବୈଷା ସର୍ବମିଦଂ ବିଭା—
ତ୍ୟେକଂ ବା ଇଦଂ ବି ବଭୂବ ସର୍ବମ୍ (୮।୫୮।୨)
'ସେହି ଏକସତ୍ତା ସର୍ବ ରୂପରେ ବିଦ୍ୟମାନ ।

ଏହିପରି ଅନୁରୂପ ମନ୍ତ୍ର ହେଉଛି—

ନାସଦାସୀତ୍ ନୋ ସଦାସୀତ୍ ତଦାନୀଂ ନାସୀଦ୍ରଜୋ
ନୋ ବ୍ୟୋମା ପରୋ ଯତ୍
କିମାବରୀବଃ କୁହ କସ୍ୟ ଶର୍ମନ୍ନମ୍ଭଃ
କିମାସୀଦ୍ ଗହନଂ ଗଭୀରମ୍
ନ ମୃତ୍ୟୁରାସୀଦମୃତଂ ନ ତର୍ହି ନ ରାତ୍ର୍ୟା
ଅହ୍ନ ଆସୀତ୍ ପ୍ରକେତଃ
ଆନୀଦବାତଂ ସ୍ୱଧୟା ତଦେକଂ ତସ୍ମାଦ୍ଧାନ୍ୟନ୍ନ
ପରଃ କିଂ ଚନାସ ।

ଈଶାବାସ୍ୟ ଉପନିଷଦ୍‌ରେ ମଧ୍ୟ କୁହାଯାଇଛି ଯେ ଜଗତରେ ଯାହା କିଛି ଅଛି ସବୁ ସେହି ଶକ୍ତିର ଅଧୀନ ।

"ଓଁ ଈଶାବାସ୍ୟମିଦଂ ସର୍ବଂ ଯତ୍କିଞ୍ଚ ଜଗତ୍ୟାଂ
ଜଗତ୍ ।"

ମୁଣ୍ଡକୋପନିଷଦ୍‌ରେ—

ଅଗ୍ନିର୍ମୂର୍ଦ୍ଧା ଚକ୍ଷୁଷୀ ଚନ୍ଦ୍ରସୂର୍ଯ୍ୟୌ
ଦିଶଃ ଶ୍ରୋତ୍ରେ ବାଗ୍ବିବୃତାଶ୍ଚ ବେଦାଃ

ବାୟୁଃ ପ୍ରାଣୋ ହୃଦୟଂ ବିଶ୍ୱମସ୍ୟ
ପଦ୍‌ଭ୍ୟାଂ ପୃଥିବୀ ହ୍ୟେଷ ସର୍ବଭୂତାନ୍ତରାତ୍ମା ।

ଅର୍ଥାତ୍‌—ଅଗ୍ନି ଯାହାର ମସ୍ତକ, ଚନ୍ଦ୍ରସୂର୍ଯ୍ୟ ଯା'ର ନେତ୍ର, ଦିଗମାନେ କର୍ଣ୍ଣ, ବେଦ ବାଣୀ, ବାୟୁ ପ୍ରାଣ, ବିଶ୍ୱ ହୃଦୟ, ପୃଥିବୀ ଚରଣ, ସେହି ବ୍ରହ୍ମ ସର୍ବବ୍ୟାପକ ।

"ବ୍ରାହ୍ମଣ ସର୍ବତ୍ର ରହସ୍ୟମୟୀ ଶକ୍ତିରେ ଆସ୍ଥା ଓ ଶ୍ରଦ୍ଧା ରଖିବାର ଉପଦେଶ ଅଛି । ବିଧିବତ୍ ସମ୍ପନ୍ନ ଯାଗଯଜ୍ଞାଦିର ଫଳସ୍ୱରୂପ ସେହି ଅଜ୍ଞାତ ଶକ୍ତି ମନୁଷ୍ୟର ସବୁ କାମନାର ପୂର୍ତ୍ତି କରେ । ମୋଟ ଉପରେ କହିଲେ ବାହ୍ୟ ଜଗତରେ ଏକ ରହସ୍ୟମୟୀ ଶକ୍ତିର ନିବାସ ରହିଛି । ଯଜୁର୍ବେଦରେ କୁହାଯାଇଛି—

"କାଽମନ ତ୍ୱା ପ୍ରତି ଗୃହ୍‌ଣାମି
କାମୈତତ୍ତେ ।"—ବାଦସନେୟକେ ।

"ଆରଣ୍ୟକ"ରେ ଏକ ନୂତନ ଦିଗର ସନ୍ଧାନ ମିଳେ । ମନନ, ଚିନ୍ତନରୁ ମଧ୍ୟ ଭୌତିକ ଯଜ୍ଞାଦି ପରି ଫଳ ମିଳେ । ଆରଣ୍ୟକ ମନୁଷ୍ୟର ଅନ୍ତର୍ଜଗତର ମହତ୍ତ୍ୱ ସ୍ୱୀକାର କରେ ।

"ଆତ୍ମା ବା ଅରେ, ଶ୍ରୋତବ୍ୟଃ ମନ୍ତବ୍ୟଃ ନିଦିଧ୍ୟାସିତବ୍ୟଃ"
ଆରଣ୍ୟକର ବିଶ୍ୱାସ ରହସ୍ୟମୟୀ ଶକ୍ତି କେବଳ ବାହ୍ୟ-
ଜଗତର ନୁହେଁ ବରଂ ମାନବର ଅନ୍ତର୍ଜଗତର ।

ଉପନିଷଦ୍ କାଳରେ ସେହି ଅନୁଭୂତି, ଅନ୍ତଦୃଷ୍ଟିର ପ୍ରାଧାନ୍ୟ । "ଆତ୍ମାନଂ ବୈ ବିଜାନଥ ।" ସଂସାରରେ ସ୍ଥାବର ଜଙ୍ଗମ ସବୁ ଈଶ୍ୱରଙ୍କ ରୂପ ।

"ସର୍ବଂ ଖଳ୍ୱିଦଂ ବ୍ରହ୍ମ ।"

ଉପନିଷଦ୍‌ର ବିଚାର ପୂର୍ବୋକ୍ତ ବିଚାରର ବିକସିତ ରୂପ । ଏକର ଦୃଷ୍ଟିକୋଣ ଅନ୍ତର୍ମୁଖୀ, ଦ୍ୱିତୀୟର ବହିର୍ମୁଖୀ । ମହେନ୍ଦ୍ରନାଥ

ସରକାରଙ୍କ ଶବ୍ଦରେ—"The one is inward, the other is outward. The one searches the truth through intuition of the soul, the other through revealation through nature."

—Hindu Mysticism. P. 18.

ଗୀତାରେ ମଧ୍ୟ ଅନୁରୂପ ଧାରଣା—

"ପୁରୁଷଃ ସ ପରଃ ପାର୍ଥ ଭକ୍ତ୍ୟା ଲଭ୍ୟସ୍ତ୍ୱନନ୍ୟୟା
ଯସ୍ୟାନ୍ତଃସ୍ଥାନି ଭୂତାନି ଯେନ ସର୍ବମିଦଂ ତତମ୍" ୮।୨୨

'ଦୈବୀ ହ୍ୟେଷା ଗୁଣମୟୀ ମମ ମାୟା ଦୁରତ୍ୟୟା
ମାମେବ ଯେ ପ୍ରପଦ୍ୟନ୍ତେ ମାୟାମେତାଂତରନ୍ତି ତେ" ୭।୧୪

"ବାୟୁର୍ଯମୋଗ୍ନି ର୍ବରୁଣଃ ଶଶାଙ୍କଃ
ପ୍ରଜାପତିସ୍ତ୍ୱଂ ପ୍ରପିତାମହଶ୍ଚ।" ଏକାଦଶ ଅଧ୍ୟାୟ।

ସେହି ଅଜ୍ଞେୟ ପରମସତ୍ତ୍ୱକୁ ନାନାଭାବରେ ବର୍ଣ୍ଣନା କରିବାକୁ ଶ୍ରୁତି ଶତମୁଖର । ଏ ସବୁଥିରେ ସେହି ରହସ୍ୟାତ୍ମକ ଧାରଣା ପୂରିରହିଛି । ଅଥର୍ବବେଦ କହନ୍ତି—

—ଅନ୍ତି ସନ୍ତଂ ନ ଜହାତି—
ଅନ୍ତି ସନ୍ତଂ ନ ପଶ୍ୟତି ।
ଦେବସ୍ୟ ପଶ୍ୟ କାବ୍ୟଂ
ନ ମମାର ନ ଜୀର୍ଯ୍ୟତି
ଅଥର୍ବ-୧୦।୮।୩୨
( ଅର୍ଥାତ୍ ସେ ନିକଟରେ ଅଛନ୍ତି କିନ୍ତୁ ସବୁରି ଅଦୃଶ୍ୟ )
"ସ ଶୃଣୋତ୍ୟକର୍ଣ୍ଣଃ",
( ସେ ସବୁ ଶୁଣନ୍ତି, କିନ୍ତୁ କର୍ଣ୍ଣ ନାହିଁ )

ତ୍ୱଂ ସ୍ତ୍ରୀ ତ୍ୱଂ ପୁମାନସି
ତ୍ୱଂ କୁମାର ଉତ ବା କୁମାରୀ
ତ୍ୱଂ ଜୀର୍ଣ୍ଣୋ ଦଣ୍ଡେନ ବଞ୍ଚସି
ତ୍ୱଂ ଜାତୋ ଭବସି ବିଶ୍ୱତୋ ମୁଖଃ ।

(ଅଥର୍ବବେଦ ୧୦।୮।୨୭)

"ତସ୍ମାଦ୍‌ବୈ ବିଦ୍ୱାନ୍ ପୁରୁଷମିଦଂ ବ୍ରହ୍ମେତି ମନ୍ୟତେ ।
ସର୍ବା ହ୍ୟସ୍ମିନ୍ ଦେବତା ଗାବୋ ଗୋଷ୍ଠ ଇବାସତେ

(ଅଥର୍ବ ୧୧।୮।୨୧)

ଉପନିଷଦ୍‌ରେ ରହସ୍ୟାତ୍ମକ ଧାରଣାର ସାଙ୍କେତିକରୂପ ଦେଖିବାକୁ ମିଳେ । ଶ୍ୱେତାଶ୍ୱତର ଉପନିଷଦ୍‌ରେ ଅଛି—

"ଦ୍ୱା ସୁପର୍ଣ୍ଣା ସଯୁଜା ସଖାୟା
ସମାନଂ ବୃକ୍ଷଂ ପରିଷସ୍ୱଜାତେ
ତୟୋରନ୍ୟଃ ପିପ୍‌ପଲଂ ସ୍ୱାଦ୍ୱତ୍ତି
ଅନଶ୍ନନନ୍ୟୋ ଅଭିଚାକଶୀତି ।

(ଏକ ବୃକ୍ଷରେ ଦୁଇଟି ପକ୍ଷୀ ରହନ୍ତି । ତନ୍ମଧ୍ୟରୁ ଗୋଟିଏ ସ୍ୱାଦୁଫଳ ଖାଇବାରେ ବ୍ୟସ୍ତ । ଅନ୍ୟଟି କିଛି ନ ଖାଇ ପ୍ରକାଶମାନ ହୋଇ ଥାଏ । ଏଥିରେ ମନୁଷ୍ୟ ଶରୀରକୁ ବୃକ୍ଷ, ଜୀବାତ୍ମା ପରମାତ୍ମାକୁ ପକ୍ଷୀରୂପେ ଇଙ୍ଗିତ କରାଯାଇଛି । ଓଡ଼ିଆ ସାହିତ୍ୟର "ଓଲଟ ବୃକ୍ଷେ ଖେଳୁଛି ଲୋଟଣୀ ପାରା" ଏହାର ଅନୁରୂପ ରଚନା ।

ଚତ୍ୱାରି ଶୃଙ୍ଗା ତ୍ରୟୋଽସ୍ୟ ପାଦା
ଦ୍ୱେ ଶୀର୍ଷେ ସପ୍ତହସ୍ତାସୋଽସ୍ୟ
ତ୍ରିଧା ବଦ୍ଧୋ ବୃଷଭୋ ରୋରବୀତି
ମହୋ ଦେବୋ ମର୍ତ୍ତ୍ୟାମା ବିବେଶ

(ଯାହାର ଚୃରୋଟି ଶୃଙ୍ଗ, ତିନୋଟି ପାଦ, ଦୁଇଟି ଶିର, ସାତଟି ହାତ ସେ ତିନ ପ୍ରକାରରେ ବନ୍ଧା ହୋଇଥିବା ଏବଂ ଶବ୍ଦ କରୁଥିବା ମହାନ୍ ଦେବ ମର୍ତ୍ତ୍ୟଲୋକରେ ଅବତୀର୍ଣ୍ଣ ହେଲେ ।)

ଅଷ୍ଟା ଚକ୍ରା ନବଦ୍ୱାରା
ଦେବାନାଂ ପୂରୟୋଧ୍ୟା
ତସ୍ୟାଂ ହିରଣ୍ୟୟଃ କୋଶଃ
ସ୍ୱର୍ଗୋ ଜ୍ୟୋତିଷା ବୃତଃ ।

ସଂସ୍କୃତ ସାହିତ୍ୟର ଲୌକିକ ସାହିତ୍ୟ ଅପେକ୍ଷା ବୈଦିକ ସାହିତ୍ୟରେ ଏହି ପ୍ରକାର ରହସ୍ୟାତ୍ମକ ଧାରଣା ପୂରି ରହିଛି । ବୈଦିକ ସାହିତ୍ୟରେ ଅନେକ ସ୍ଥଳରେ କୁହାଯାଇଛି—"ଯ ଏବଂ ବେଦ" ଅର୍ଥାତ୍ ଯେ ଏ ପ୍ରକାର ବୁଝିଛି, ସେ ବ୍ରହ୍ମକୁ ବୁଝିଛି । The Person who is in the Sun, that is me.

—Yajurveda 40/17

ଏଥିରେ ଯଦି ଗୋପନୀୟ ରହସ୍ୟ ନ ଥାନ୍ତା ତେବେ ବାରମ୍ବାର "ଯ ଏବଂ ବେଦ" କାହିଁକି କୁହାଯାଇଥାନ୍ତା ?

Dr. Raghu Virଙ୍କ ଭାଷାରେ— Veda would ask you this day—Have you and your possessions widened so far as you could declare "The unbounded Ocean am I."

—(Vedic Mysticism)

ଅଥର୍ବ ବେଦରେ ସେହିକଥା—"ସମୁଦ୍ରୋ ଅସ୍ମି ବିଧର୍ମଣା

—ଅଥର୍ବ – ୧୬।୩।୬

ଲୌକିକ ସାହିତ୍ୟରେ ମଧ୍ୟ ବୈଦିକ ରହସ୍ୟାତ୍ମକ ଧାରଣାର ଅନୁରୂପ ବର୍ଣ୍ଣନା ମିଳେ । ଅଥର୍ବ ବେଦର "ତ୍ୱଂ ସ୍ତ୍ରୀ ତ୍ୱଂ ପୁମାନସି" ପଦ ।

"ତ୍ୱମେବ ମାତା ଚ ପିତା ତ୍ୱମେବ
ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ
ତ୍ୱମେବ ସର୍ବଂ ମମ ଦେବଦେବ ।"

ନାନା ରହସ୍ୟାତ୍ମକ ଧାରଣାରେ ଜୀବ ସେହି ପରମର ସନ୍ଧାନ କରିଛି ।

"କାରୁଣ୍ୟାପଂ ତ୍ରିଦଶପରିଷତ୍ କାଳମେଘଂ ଦଦର୍ଶ"

—ଚମ୍ପୂ ରାମାୟଣମ୍ ୧।୧୩

"ନିଦ୍ରାମୁଦ୍ରାଂ ନିଖିଳ ଜଗତୀରକ୍ଷଣେ ଜାଗରୂକାମ୍"

—ଚମ୍ପୂ ରାମାୟଣମ୍ ୧।୧

"ବାଗର୍ଥୋ ଇବ ସମ୍ପୃକ୍ତୌ ବାଗର୍ଥପ୍ରତିପତ୍ତୟେ"

—ରଘୁବଂଶ

'ଯଦେତଦ୍ ବାଙ୍ମୟଂ ବିଶ୍ୱମର୍ଥମୂର୍ତ୍ତ୍ୟା ବିବର୍ତ୍ତତେ
ସୋଽସ୍ମି କାବ୍ୟ ପୁମାନମ୍ବ ।"

—କାବ୍ୟମୀମାଂସା ।

ଏହି ପ୍ରକାର ଆଲୋଚନା କଲେ ଜଣାଯିବ ଯେ ସାହିତ୍ୟରେ ରହସ୍ୟାତ୍ମକ ପ୍ରବୃତ୍ତି ବୋଲି ଯାହାକୁ କୁହାଯାଏ ସେସବୁ ସଂସ୍କୃତ ସାହିତ୍ୟରେ ଅନେକ ସ୍ଥାନ ସର୍ବତ୍ର ପରିବ୍ୟାପ୍ତ ହୋଇ ରହିଛି । "ଅଳି ବିଳାସି ସଂଳାପ" ନାମକ କାବ୍ୟ ଗ୍ରନ୍ଥରେ ଏକ ଭ୍ରମର ଏବଂ ଏକ ବିଳାସୀର କଥୋପକଥନ ଛଳରେ ସମଗ୍ର ଷଡ଼୍ ଦର୍ଶନର ତତ୍ତ୍ୱ ରହସ୍ୟାତ୍ମକ ଭାବରେ ସନ୍ନିବିଷ୍ଟ । ପ୍ରବନ୍ଧର ଗୌରବ ଭୟରୁ ସେସବୁର ଆଲୋଚନା ସମ୍ଭବପର ନୁହେଁ ।

---

# ହିନ୍ଦୀ ସାହିତ୍ୟରେ ରହସ୍ୟବାଦ

**ଶ୍ରୀ ସୁରେଶ ଚନ୍ଦ୍ର ନନ୍ଦ**

ହିନ୍ଦୀ ସାହିତ୍ୟର ଇତିହାସରେ ଭକ୍ତିକାଳ (ଖ୍ରୀ:ଅ: ୧୩୧୮ ରୁ ଖ୍ରୀ: ଅ: ୧୬୪୩) ସାହିତ୍ୟର ସ୍ୱର୍ଣ୍ଣଯୁଗ ନାମରେ ଅଭିହିତ । ଭକ୍ତି ଯୁଗର ନିର୍ଗୁଣ ଜ୍ଞାନାଶ୍ରୟୀ ଶାଖାର ସର୍ବଶ୍ରେଷ୍ଠ ସନ୍ତକବି କବୀର ଦାସଙ୍କ ରଚନାରେ ସର୍ବପ୍ରଥମେ ରହସ୍ୟବାଦର ଦୃଷ୍ଟାନ୍ତ ଦେଖିବାକୁ ମିଳେ । ପ୍ରସିଦ୍ଧ ସମାଲୋଚକ ଆଚାର୍ଯ୍ୟ ରାମଚନ୍ଦ୍ର ଶୁକ୍ଲଙ୍କ ଭାଷାରେ "ଚିନ୍ତା କ୍ଷେତ୍ରର ଅଦ୍ୱୈତବାଦ, ଭାବନାକ୍ଷେତ୍ରରେ ରହସ୍ୟବାଦ ନାମରେ ଅଭିହିତ ।" ବୈଦିକ ଋଷିମାନେ ବହୁକାଳ ଧରି ଚିନ୍ତା କରିବା ପରେ ଉପନିଷଦ କାଳରେ ଏହି ସତ୍ୟତାରେ ଉପନୀତ ହୋଇଥିଲେ ଯେ, ସଂସାରରେ ବ୍ରହ୍ମ ହିଁ ଏକମାତ୍ର ସତ୍ୟ ।

ମାୟା ହେତୁ ସଂସାରର ଲୋକଙ୍କୁ ପରଂବ୍ରହ୍ମ ଭିନ୍ନ ଭିନ୍ନ ରୂପରେ ଦୃଷ୍ଟିଗୋଚର ହୁଅନ୍ତି । କବୀର ଦାସଙ୍କ କବିତା ଭାରତୀୟ ବ୍ରହ୍ମବାଦ ବା ଅଦ୍ୱୈତବାଦର ସିଦ୍ଧାନ୍ତଦ୍ୱାରା ପ୍ରଭାବିତ । କବିତାରେ ସେ ଜ୍ଞାନ ଓ ଉପଦେଶର ଯେଉଁ ବାଣୀ ଶୁଣାଇଛନ୍ତି, ତାହା ଅଦ୍ୱୈତବାଦ ଉପରେ ଆଧାରିତ । ଅହମ୍ ଏବଂ ପରମର ଅଦ୍ୱୈତତା କବୀରଙ୍କ ଲିଖିତ ନିମ୍ନ ଉଦାହରଣରୁ ସ୍ପଷ୍ଟ ବୁଝାପଡ଼େ । ତହିଁରେ ସେ ପରମାତ୍ମାଙ୍କୁ ଜଳ ଓ ତାଙ୍କର ରୂପାନ୍ତର ଜୀବାତ୍ମାକୁ ହିମ ସଙ୍ଗେ ତୁଳନା କରି ଉଭୟେ ମୂଳତଃ ଓ ପରିଣାମତଃ ଏକ ବୋଲି ଦର୍ଶାଇଛନ୍ତି ।

"ପାନୀ ହୀ ତେଂ ହିମ୍ ଭୟା, ହିମ୍ ହ୍ୱୈ ଗୟା ବିଲାୟ ।
ଜୋ କୁଛ୍ ଥା ସୋଈ ଭୟା, ଅବ୍ କୁଛ୍ କହା ନ ଜାୟ ॥"

ଜୀବାତ୍ମା ଓ ପରମାତ୍ମାଙ୍କ ମିଳନରେ ମାୟା ଅନ୍ତରାୟ ସୃଷ୍ଟି କରେ ବୋଲି ସେ ତାଙ୍କ କବିତାରେ ବହୁବାର ଦର୍ଶାଇଛନ୍ତି । ମାୟା ଦୂରୀଭୂତ ହେଲେ ଏ ଦୁହିଙ୍କର ମିଳନ ହୋଇଯାଏ ।

ବ୍ରହ୍ମ-ପ୍ରାପ୍ତି ନିମନ୍ତେ କବୀର ଦାସ ଶଙ୍କରାଚାର୍ଯ୍ୟଙ୍କ ଅଦ୍ୱୈତ-ବାଦର ଅନୁସରଣରେ ଜ୍ଞାନର ମହିମା ପ୍ରତିଷ୍ଠା କରିଅଛନ୍ତି । ମାତ୍ର ଭକ୍ତିର ସହଯୋଗ ବିନା ଜ୍ଞାନ ଅପୂର୍ଣ୍ଣ ଓ ନୀରସ ହୁଏ ବୋଲି ମଧ୍ୟ ସେ ସ୍ୱୀକାର କରିଅଛନ୍ତି । ସୁତରାଂ ଭକ୍ତିପ୍ରାପ୍ତି ନିମନ୍ତେ ବିଶିଷ୍ଟା-ଦ୍ୱୈତବାଦୀ ରାମାନନ୍ଦୀ ସମ୍ପ୍ରଦାୟର ବୈଶିଷ୍ଟ୍ୟ ସେ ଗ୍ରହଣ କରି-ଅଛନ୍ତି । ଏହା ହେଲା ବୈଷ୍ଣବ-ଭକ୍ତିଭାବନା । ଇଷ୍ଟଦେବଙ୍କ ପ୍ରତି ମାଧୁର୍ଯ୍ୟ ବା ଶୃଙ୍ଗାର ଭାବ ବୈଷ୍ଣବଭକ୍ତିର ଏକ ପ୍ରଧାନ ଅଙ୍ଗ । କବୀର ଦାସ ଏହି ଭାବକୁ ରହସ୍ୟବାଦ ଛଳରେ ବର୍ଣ୍ଣନା କରିଅଛନ୍ତି । କେବେ ସେ ପରବ୍ରହ୍ମ ରାମଙ୍କୁ ପିତାରୂପେ ସମ୍ବୋଧନ କରି କହି

ଅଛନ୍ତି "ବାପ୍ ରାମ୍ ରାୟା ଅବ୍ ହୁଁ ଶରଣ ତିହାରୀ," ତ କେବେ "ହରି ଜନନୀ ମେଂ ବାଲକ୍ ତେରା" କହି ମାତାରୂପେ ସମ୍ବୋଧନ କରିଅଛନ୍ତି ।

ମୁସଲମାନ ସୂଫୀ ପରମ୍ପରାର ଭାବାତ୍ମକ ରହସ୍ୟବାଦର ଯଥେଷ୍ଟ ପ୍ରଭାବ କବୀରଙ୍କ ଉପରେ ପଡ଼ିଥିବା ଜଣାଯାଏ । ସୂଫୀ-ମାର୍ଗୀ କବିଙ୍କର ପ୍ରେମବାଦ ଗ୍ରହଣ କରିଥିବାରୁ କବୀରଙ୍କ କବିତାରେ ରମଣୀୟତା ଓ ସରସତା ଉପଲବ୍ଧ ହୁଏ । ତାଙ୍କ କବିତା ପ୍ରତି ଜନତାର ଆକର୍ଷଣ ଦିନୁଦିନ ବୃଦ୍ଧି ପାଇବାର ଏହା ଅନ୍ୟତମ କାରଣ । ସାଧାରଣତଃ ବୈଷ୍ଣବଙ୍କ ଭକ୍ତିଭାବନା ଓ ସୂଫୀଙ୍କର ବିରହ-ସାଧନା ପ୍ରାୟ ଏକପ୍ରକାର । କେବଳ ପ୍ରଭେଦ ଏତିକି ଯେ, ଭକ୍ତିଭାବନାରେ ଈଶ୍ୱର ପ୍ରିୟତମ ଓ ଭକ୍ତ ପ୍ରିୟତମା ଏବଂ ସୂଫୀ ଭାବନାରେ ଈଶ୍ୱର ପ୍ରିୟତମା ଓ ଭକ୍ତ ପ୍ରିୟତମ । କବୀର ଭାରତୀୟ । ତେଣୁ ତାଙ୍କ ଉପରେ ବୈଷ୍ଣବ-ଭକ୍ତିଭାବନାର ବେଶି ପ୍ରଭାବ ପଡ଼ିଥିବା ସ୍ୱାଭାବିକ । ସୁତରାଂ ସେ ଈଶ୍ୱରଙ୍କ ସହିତ ପିତାମାତା ଆଦି ସମ୍ପର୍କ ସ୍ଥାପନ କରିବା ଛଡ଼ା ଭାରତୀୟ ବୈଷ୍ଣବ-ଭକ୍ତିଭାବନାର ଆନୁକୂଲ୍ୟରେ ସୂଫୀ ପରମ୍ପରାର ପତିପତ୍ନୀ ସମ୍ବନ୍ଧକୁ ମଧ୍ୟ ଗ୍ରହଣ କରିଥିଲେ । ଅର୍ଥାତ୍ ପ୍ରିୟତମ ଈଶ୍ୱରଙ୍କ ସହିତ ମିଳନ ନିମନ୍ତେ ପ୍ରିୟତମା ଭକ୍ତ ସର୍ବଦା ବ୍ୟାକୁଳ ବୋଲି କବୀରଙ୍କ କବିତାରେ ପ୍ରଦର୍ଶିତ ହୋଇଅଛି । ପ୍ରେମ-ଅଭିବ୍ୟଞ୍ଜନାର ଶ୍ରେଷ୍ଠ ରୂପ ପତିପତ୍ନୀ ସମ୍ବନ୍ଧଦ୍ୱାରା ହିଁ ବ୍ୟକ୍ତ ହୋଇପାରେ । ଏଥିପାଇଁ କବୀର ନିଜକୁ 'ରାମକୀ ବହୁରିୟା' ବୋଲି କହିଅଛନ୍ତି । ରାମଙ୍କର ପ୍ରେୟସୀରୂପେ ସେ କେବେ ରାମଙ୍କଠାରୁ ସ୍ନେହ-ସୋହାଗ ଲାଭ କରି ଝୁରୁଛନ୍ତି ତ କେବେ ବିରହିଣୀ ନାୟିକାରୂପେ ବିରହାଗ୍ନି-ପ୍ରଜ୍ୱଳିତ ହୃଦୟର ବେଦନା ପ୍ରକାଶ କରିଅଛନ୍ତି ।

"ସୁହ୍ବ ତନ୍ ଜାର୍ବୌଂ ମସି କର୍ବୌଂ, ଲଖୌଂ ରାମ୍ କା ନାଉଁ ।
ଲେଖଣି କର୍ବୌଂ କରଂକ କୀ, ଲଖି ଲଖ୍ ରାମ୍ ପଠାଉଁ ॥"

'ହରିଙ୍କ ଦୁଲହନ୍' ରୂପେ ସେ ସର୍ବଦା ଗୋଟିଏ ଆଶଙ୍କାରେ ଅସ୍ଥିର । ତାହା ହେଉଛି, ତାଙ୍କ ସହିତ କେଳି କରିବା ପାଇଁ ସେ ଯଥାବିଧି ଆୟୋଜନ କରିବାକୁ ସମର୍ଥ ହେବେ କି ନାହିଁ ? ରହସ୍ୟ-କେଳି ସମୟରେ ପ୍ରିୟତମଙ୍କ ସହିତ କପରି ବ୍ୟବହାର କରିବାକୁ ହେବ, ସେ ତାହା ମଧ୍ୟ ଜାଣନ୍ତି ନାହିଁ ।

"ମନ୍ ପ୍ରତୀତ୍ ନ ପ୍ରେମ୍ ରସ୍ ନା ଇସ୍ ତନ୍ ମେଂ ରଙ୍ଗ୍ ।
କ୍ୟା ଜାଣୌଂ ଉସ୍ ପୀଓ୍ୱ ସୁଁ କୈସେ ରହସୀ ସଙ୍ଗ୍ ॥"

ପରମାତ୍ମାଙ୍କ ସହିତ ମିଳନ ବେଳେ ରହସ୍ୟବାଦର ଚରମସୀମା ପ୍ରଦର୍ଶିତ ।

"ନୟନୋଂ କୀ କରି କୋଠରୀ ପୁତଲୀ-ପଲଙ୍ଗ ବିଛାୟ,
ପଲକୋଂ କୀ ଚିକ ଡାରିକେ ପିଓ୍ୱକୋ ଲିୟା ରିଝାୟ ॥"

ସୂଫୀ କବିଙ୍କ ମତରେ ପ୍ରିୟତମ ଓ ପ୍ରିୟତମା ଉଭୟେ ପ୍ରେମ-ବିରହରେ ଆନନ୍ଦିତ ଓ ଅସ୍ଥିର ହୁଅନ୍ତି । କିନ୍ତୁ କବୀର ଆଦିଙ୍କ ମତରେ କେବଳ ପ୍ରେୟସୀ ବିରହବ୍ୟାକୁଳ, ପ୍ରିୟତମ ନୁହନ୍ତି । କବୀରଙ୍କ ବ୍ରହ୍ମ ଓ ସୂଫୀଙ୍କ ଆଲ୍ଲାହ ଉଭୟେ ନିର୍ଗୁଣ । ସୁତରାଂ ନିର୍ଗୁଣଙ୍କ ପ୍ରତି ପ୍ରେମ ପ୍ରଦର୍ଶନ କରିବାରେ ରହସ୍ୟଭାବନା ସ୍ୱତଃ ପ୍ରକାଶିତ । ଏହି ପ୍ରେମର ମୂଳାଧାର ଭାବନା । ସୁତରାଂ ସୂଫୀଙ୍କର ଏହି ଭାବନା ଭାବାତ୍ମକ ରହସ୍ୟବାଦ ନାମରେ ଅଭିହିତ ।

ସାଧନାକ୍ଷେତ୍ରରେ କବୀର ଆଦି ସନ୍ତ କବିମାନେ ସାଧନାତ୍ମକ ରହସ୍ୟବାଦ ଗ୍ରହଣ କରିଥିଲେ । ପତଞ୍ଜଳିଙ୍କ ହଠଯୋଗ, ତନ୍ତ୍ର, ରସାୟନ ଆଦି କ୍ରିୟା ଏହି ସାଧନାତ୍ମକ ରହସ୍ୟବାଦରେ ଅତ୍ୟନ୍ତ

ମହତ୍ତ୍ୱପୂର୍ଣ୍ଣ । କବୀରଙ୍କ ପୂର୍ବବର୍ତ୍ତୀ ସିଦ୍ଧ ଓ ହଠଯୋଗୀମାନେ ଏହାର ପ୍ରବର୍ତ୍ତକ । ଉଭୟେ ବାହ୍ୟ-ପୂଜା, ଜାତିଭେଦ, ତୀର୍ଥାଟନ ଆଦିକୁ ଅସାର ବୋଲି ଘୋଷଣା କରି ସେ ସବୁର ବିରୋଧ କରିଥିଲେ । ପରବର୍ତ୍ତୀ କାଳରେ କବୀର ପ୍ରଭୃତି ସନ୍ତ କବିମାନେ ଏହି ପରମ୍ପରାକୁ ନିରବଚ୍ଛିନ୍ନ ରଖିଥିଲେ । ଶରୀରମଧ୍ୟସ୍ଥ ଅଗ୍ନିଚକ୍ର, ନାଭିଚକ୍ର, ସ୍ୱାଧିଷ୍ଠାନଚକ୍ର, ମଣିପୁର ଚକ୍ର, ଆଜ୍ଞାଚକ୍ର ଓ ସହସ୍ରାର ଆଦି ଚକ୍ର; ଇଡ଼ା, ପିଙ୍ଗଳା, ସୁଷୁମ୍ନା ଆଦି ନାଡ଼ି ଏବଂ ଶୂନ୍ୟମଣ୍ଡଳ ବା ଗଗନ-ମଣ୍ଡଳ ଆଦିର ସାଧନା ବ୍ରହ୍ମପ୍ରାପ୍ତିର ସୋପାନ ସଦୃଶ । ସାଧକ ଶରୀରର ଅଙ୍ଗପ୍ରତ୍ୟଙ୍ଗ ତଥା ଶ୍ୱାସପ୍ରଶ୍ୱାସ ଉପରେ ଉପଯୁକ୍ତ ଅଧିକାର ପ୍ରାପ୍ତିପୂର୍ବକ ସେଗୁଡ଼ିକର ଯଥାର୍ଥ ସଂଚାଳନ କରି ମନକୁ ଏକାଗ୍ର କରେ ଏବଂ ପରମାତ୍ମାଙ୍କର ଦିବ୍ୟ ସ୍ୱରୂପକୁ ହିଁ ଚିନ୍ତା କରେ । ଆତ୍ମା ସମାଧିସ୍ଥ ହେବା ପରେ ପରଂବ୍ରହ୍ମଙ୍କ ସହିତ ସାଧକର ମିଳନ ହୁଏ । ସିଦ୍ଧଯୋଗୀ ଗୋରଖନାଥଙ୍କଦ୍ୱାରା ପ୍ରବର୍ତ୍ତିତ ଏହି ଯୋଗ ସାଧନାକୁ କବୀର ପ୍ରମୁଖ ସନ୍ତ କବିମାନେ ଉତ୍ତରାଧିକାରୀ ସୂତ୍ରରେ ଗ୍ରହଣ କରିଥିଲେ । ଏହି ସମାଧିରେ ଯେଉଁମାନେ ସିଦ୍ଧିଲାଭ କରିଛନ୍ତି, ସେମାନେ ସେମାନଙ୍କ ହୃଦୟରେ ସମୁଦ୍ରର ଗମ୍ଭୀର ଗର୍ଜ୍ଜନ, ଝାଞ୍ଜ-ମୃଦଙ୍ଗ ପ୍ରଭୃତିର ଧ୍ୱନି ଓ ଶ୍ରୀକୃଷ୍ଣଙ୍କ ମୁରଲୀ ଧ୍ୱନି ଶୁଣିବା କଥା ଅନୁଭବ କରିଛନ୍ତି । ସିଦ୍ଧିଲାଭ ପରେ ମସ୍ତକୋପରି ଶୂନ୍ୟମଣ୍ଡଳରେ ସୋମରସର ବୃଷ୍ଟି ହୁଏ ଏବଂ ସାଧକ ତାହା ପାନ କରେ । କବୀରଙ୍କ ନିମ୍ନଲିଖିତ କେତୋଟି ପଙ୍‌କ୍ତିରୁ ସାଧନାତ୍ମକ ରହସ୍ୟବାଦର ଦୃଷ୍ଟାନ୍ତ ମିଳେ ।

"ଇସ୍ ଗଗନ୍ ଗୁଫାମେଂ ଅଜର୍ ଝରୈ ।
ବିନ୍ ବାଜା ଝନ୍‌କାର ଉଠେ ଜହଁ, ସମୁଝି ପରୈ ଜବ୍ ଧ୍ୟାନ୍ ଧରୈ ॥
ବିନା ତାଲ୍ ଜହଁ କଁୱଲ୍ ଫୁଲାନେ, ତେହି ଚଢ଼ି ହଂସା କେଲି କରୈ ॥

ବନା ଚନ୍ଦା ଉଜପ୍ୟାଗ୍ନି ଦରସୈ, ଜହଁତହଁ ହଂସା ନଜର ପଡରେ ॥
ଦସ୍‌ଓ୍ୱେଂ ଦ୍ୱାରେ ତାଲି ଲଗୀ, ଅଲଖ୍ ପୁରୁଷ ଜାକୋ ଧ୍ୟାନ୍ ଧରେ ॥
କାଲ୍ କରାଲ୍ ନକଟ ନହିଁ ଆଓ୍ୱେ, କାମ କ୍ରୋଧ ମଦ ଲୋଭ ଜରେ ॥
ଜୁଗନ ଜୁଗନ୍ କୀ ତୃଷା ବୁଝାଣୀ, କରମ ଭରମ ଅବ୍ ବ୍ୟାଧି ଟରେ ॥
କହୈ କବୀର, ସୁନୋ ଭାଇ ସାଧୋ, ଅମର ହୋଇ କବ୍‌ହୂଁ ନମରେ ॥"

ମୁସଲମାନ ସୂଫୀ କବିମାନଙ୍କର ପ୍ରେମାଖ୍ୟାନକ ପରମ୍ପରା କଥା କବୀରଙ୍କ ପ୍ରସଙ୍ଗରେ ଅବତାରଣା କରାଯାଇଅଛି । ଏହି ପରମ୍ପରାରେ ମଲ୍ଲିକ ମୁହମ୍ମଦ ଜାୟସୀ ଏକ ଉଜ୍ଜ୍ୱଳ ରତ୍ନ । ତାଙ୍କ ରଚିତ 'ପଦ୍ମାବତୀ' ହିନ୍ଦୀ ସାହିତ୍ୟର ଏକ ଅମୂଲ୍ୟ ନିଧି । ଚିତୋରର ରାଜା ରତ୍ନସେନ (ଭୀମସେନ ?) ଓ ସିଂହଳ ରାଜକୁମାରୀ ପଦ୍ମାବତୀଙ୍କ ଐତିହାସିକ ବୃତ୍ତାନ୍ତ ଏହି ମହାକାବ୍ୟର ଆଧାର । ଏଥିରେ ଭୌତିକ ପ୍ରେମ ଆଧାରରେ ଆଧ୍ୟାତ୍ମିକ ପ୍ରେମର ଅଭିବ୍ୟଞ୍ଜନା କରାଯାଇଅଛି । ରତ୍ନସେନଙ୍କ ସିଂହଳଯାତ୍ରା ଏବଂ ପଦ୍ମାବତୀଙ୍କ ସହ ମିଳନ ବ୍ରହ୍ମ ତଥା ଜୀବଙ୍କର ଦାମ୍ପତ୍ୟ ପ୍ରେମର ପ୍ରତୀକ । ଏଥିରେ ସଂଯୋଗ ଶୃଙ୍ଗାର ଓ ବିପ୍ରଲମ୍ଭ ଶୃଙ୍ଗାର ସହିତ ବେଦାନ୍ତ ଓ ହଠଯୋଗର ବିଚିତ୍ର ମିଶ୍ରଣ ହୋଇଅଛି । ପ୍ରେମର ପ୍ରଧାନତା ହେତୁ ଜାୟସୀଙ୍କ ରହସ୍ୟବାଦ ଭାବାତ୍ମକ ରହସ୍ୟବାଦ ନାମରେ ଅଭିହିତ । ଜାୟସୀଙ୍କ ରହସ୍ୟବାଦର ସୁନ୍ଦର ଉଦାହରଣ ଏହିପରି—

"ବିଗସା କୁମୁଦ୍ ଦେଖି ଶଶିରେଖା,
ଭୟୀ ତହଁ ଓପ୍ ଜହାଁ ଜୋଇ ଦେଖା ।
ପାଓ୍ୱା ରୂପ୍ ରୂପ୍ ଜସ୍ ଚହା;
ଶଶିମୁଖ ଜନୁ ଦରପନ୍ ହୋଇ ରହା ।
ନୟନ୍ ଜୋ ଦେଖା କଓ୍ୱଁଲ୍ ଭା, ନିରମଲ୍ ନୀର ଶରୀର;
ହସତ୍ ଜୋ ଦେଖା ହଂସ୍ ଭା, ଦଶନ୍ ଜ୍ୟୋତି ନଗ ହୀର ।"

ପଦ୍ମାବତୀ ଜଳାଶୟରେ ସ୍ନାନ କରୁଅଛନ୍ତି । କବି ଜାୟସୀ ତାଙ୍କୁ ପରମ ରୂପର ପ୍ରତୀକରୂପେ ଗ୍ରହଣ କରିଅଛନ୍ତି । 'କମଳ', 'ଗୀର', ହଂସ, 'ନଗ' ଓ 'ହୀର' ବିଶ୍ୱର ଅନେକ-ରୂପ ତାର ପ୍ରତୀକ । ସମଗ୍ର ଜଳାଶୟ ଅଖିଳ ବିଶ୍ୱର ପ୍ରତିନିଧିତ୍ୱ କରୁଅଛି । ବିଶ୍ୱର ଅନେକରୂପତା (କମଳ, ଗୀର ଆଦି) ନିଜ ନିଜର ପ୍ରକୃତ ରୂପ ପଦ୍ମାବତୀଙ୍କ ବିରାଟ ରୂପରେ ଲାଭ କରିଅଛନ୍ତି । ଶଶିମୁଖ ଅର୍ଥାତ୍ ପଦ୍ମାବତୀ ଗୋଟିଏ ଦର୍ପଣ ପରି, ତହିଁରେ ସମଗ୍ର ଜଳାଶୟ (ବିଶ୍ୱ) ପ୍ରତିବିମ୍ବିତ । ଏହିପରି ଭାବରେ ଅହମ୍‌ର ବ୍ରହ୍ମରେ ବିଳାସ କରିବାର ଏହା ସୁନ୍ଦରତମ ଉଦାହରଣ । ନିର୍ଗୁଣଧାରାର ରହସ୍ୟବାଦୀ କବିମାନଙ୍କ ମଧ୍ୟରେ କବୀର ଓ ଜାୟସୀଙ୍କ ନାମ ଉଲ୍ଲେଖ-ଯୋଗ୍ୟ ।

ଭକ୍ତିଯୋଗର ସଗୁଣଧାରାର କବିମାନଙ୍କ ମଧ୍ୟରେ ସ୍ପଷ୍ଟ ରୂପେ ରହସ୍ୟବାଦ ପରିଲକ୍ଷିତ ହୁଏ ନାହିଁ । ଗୋସ୍ୱାମୀ ତୁଳସୀ ଦାସ-ରଚିତ 'ବିନୟ ପତ୍ରିକା'ରେ ନିର୍ଗୁଣ ଅଶରୀରୀ ବ୍ରହ୍ମଙ୍କର ରଙ୍ଗହୀନ ସଂସାର-ଚିତ୍ର ନିର୍ମାଣ-ସମ୍ବନ୍ଧୀୟ ବର୍ଣ୍ଣନାରେ ରହସ୍ୟବାଦର କିଞ୍ଚିତ୍ ଆଭାସ ମିଳେ ।

''କେଶବ, କହି ନ ଜାଇ କା କହିଏ ।
ଦେଖତ୍ ତବ୍ ରଚନା ବିଚିତ୍ର ଅତି, ସମୁଝି ମନହିଂ
ମନ୍ ରହିଏ ॥
ଶୂନ୍ୟ ଭିତ୍ତି ପର୍ ଚିତ୍ର, ରଙ୍ଗ୍ ନହିଁ, ତନୁ ବିନୁ ଲିଖା
ଚିତେରେ ।
ଧୋଏ ମିଟୈ ନ ମରୈ ଭୀତି ଦୁଃଖ୍ ପାଇୟ ଇହି
ତନୁ ହେରେ ॥

ରବିକର-ନୀର୍ ବସେ ଅତି ଦାରୁନ୍ ମକର୍ ରୂପ୍ ତେହି
ମାହିଂ ।
ବଦନ୍ ହିନ୍ ସୋ ଗ୍ରସେ ଚରାଚର୍, ପାନ୍ କରନ୍ ଜେ
ଜାହିଂ ॥"

ମୀରାଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ଶୃଙ୍ଗାର ଭକ୍ତି-ଭାବନାରେ ରହସ୍ୟବାଦର ସୂଚନା ମିଳିଥାଏ । ମାତ୍ର ନିର୍ଗୁଣଧାରାର କବୀର ଓ ଜାୟସୀଙ୍କ ପରେ ବାସ୍ତବିକ୍ ରହସ୍ୟବାଦ କେବଳ ଆଧୁନିକ କବିମାନଙ୍କ କବିତାରେ ଦୃଷ୍ଟିଗୋଚର ହୁଏ ।

ଭକ୍ତିକାଳ ଓ ରୀତିକାଳର ପରମ୍ପରା ପରେ ଭାରତେନ୍ଦୁ ହରିଶ୍ଚନ୍ଦ୍ର ଆଧୁନିକ ହିନ୍ଦୀ ସାହିତ୍ୟର ଦ୍ୱାର ଉଦ୍‌ଘାଟନ କଲେ । (ଖ୍ରୀ:ଅ: ୧୮୬୮) । ତାଙ୍କ ପ୍ରଭାବରେ ସାହିତ୍ୟକ୍ଷେତ୍ରରେ ଦେଶପ୍ରେମ ଓ ଜାତୀୟ ଗୌରବର ଗୋଟିଏ ନୂତନ ଧାରା ପ୍ରବାହିତ ହେଲା । ଖ୍ରୀ: ଅ: ୧୮୯୩ ଠାରୁ ଖ୍ରୀ:ଅ: ୧୯୧୮ ପର୍ଯ୍ୟନ୍ତ କାବ୍ୟର ଏହି ନୂତନଧାରା ଅବଶ୍ୟ ବହୁମୁଖୀ ପ୍ରସାର ଲାଭ କରିଥିଲା । ମାତ୍ର ମହାବୀର ପ୍ରସାଦ ଦ୍ୱିବେଦୀଙ୍କ ପ୍ରଭାବରେ କବିତାକ୍ଷେତ୍ରରେ ଭାଷାର ସଂସ୍କାର ଆସିବା ସଙ୍ଗେ ସଙ୍ଗେ କବିତାର ସ୍ୱରୂପ ଗଦ୍ୟବତ୍ ନୀରସ, ଇତିବୃତ୍ତାତ୍ମକ ଓ ବାହ୍ୟାର୍ଥ-ନିରୂପକ ହୋଇପଡ଼ିଲା । କବିତାରେ କଳ୍ପନାର ରଙ୍ଗ ଅତ୍ୟନ୍ତ କମ୍ ବା ଅସ୍ପଷ୍ଟ ଭାବରେ ରହୁଥିଲା ଏବଂ ତହିଁରେ ହୃଦୟର ଆବେଗ ପୂର୍ଣ୍ଣରୂପେ ଅଭିବ୍ୟକ୍ତ ହେଉ ନ ଥିଲା । ପରମ୍ପରାଗତ ବ୍ରଜଭାଷା-କାବ୍ୟପ୍ରେମୀ ଏବଂ ଇଂରାଜୀ ଓ ବଙ୍ଗଳା କବିତା ସହିତ ପରିଚିତ ସାହିତ୍ୟିକମାନେ ଉକ୍ତ ଅଭାବ ଉପଲବ୍‌ଧି କରୁଥିଲେ । ସୁତରାଂ କବିମାନଙ୍କ ମନରେ ଆଧୁନିକ ଖଡ଼ିବୋଲି କବିତାରେ ପଦଲାଳିତ୍ୟ, କଳ୍ପନାର ପ୍ରବାହ, ଭାବର ବେଗବତ୍ତା

ବ୍ୟଞ୍ଜନା, ବେଦନାର ନିବୃତ୍ତି, ଶବ୍ଦ-ପ୍ରୟୋଗର ବିଶେଷତା ଆଦି ବିବିଧ ବିଷୟର ସମାବେଶ ଦେଖିବାର ଆକାଙ୍‌କ୍ଷା ବଢ଼ିବାକୁ ଲାଗିଲା ।

ସୁତରାଂ ଖଡ଼ିବୋଲି କବିତା ଯେଉଁ ରୂପରେ ଅଗ୍ରସର ହେଉଥିଲା, ତହିଁରେ ସନ୍ତୁଷ୍ଟ ନ ରହି ଖ୍ରୀ: ଅ: ୧୯୧୪—୧୯୧୮ରେ ମୈଥିଳୀଶରଣ ଗୁପ୍ତ, ମୁକୁଟଧର ପାଣ୍ଡେ ଆଦି କେତେକ କବି କାବ୍ୟକୁ କଳ୍ପନାର ନୂତନ ରୂପରଙ୍ଗରେ ରଞ୍ଜିତ ତଥା ଅନ୍ତର୍ଭାବ-ଅଭିବ୍ୟଞ୍ଜକ କରିବାରେ ପ୍ରବୃତ୍ତ ହେଲେ । ସେତେବେଳେ ଇଂରାଜୀ ସାହିତ୍ୟ ଅନୁସରଣରେ ବଙ୍ଗଳାରେ ଗୀତିକବିତା (Lyrics) ପ୍ରକାଶିତ ହେଉଥିଲା । ତାହାର ପ୍ରଭାବରେ ଉକ୍ତ କବିମାନେ ଚିତ୍ର-ମୟୀ, କୋମଳ ଓ ଅଭିବ୍ୟଞ୍ଜକ ଭାଷାରେ ନୂତନ ଧରଣର କବିତା ରଚନା କରିବାକୁ ଲାଗିଲେ । ତହିଁରେ ରହସ୍ୟଭାବନାର ସୂତ୍ରପାତ ହୋଇଥିଲା । ଗୁପ୍ତଜୀଙ୍କର 'ନକ୍ଷତ୍ର ନିପାତ', 'ଅନୁରୋଧ', 'ପୁଷ୍ପାଞ୍ଜଳି', 'ସ୍ୱୟଂଆଗତ' ଆଦି କେତେକ କବିତାରେ ଏହି ରହସ୍ୟବାଦର ସୂଚନା ପରିଲକ୍ଷିତ ହୁଏ । 'ପୁଷ୍ପାଞ୍ଜଳି' ଓ 'ସ୍ୱୟଂଆଗତ'ର କେତୋଟି ପଙ୍‌କ୍ତି ଏଠାରେ ଉଲ୍ଲେଖଯୋଗ୍ୟ ।

(କ) "ମେରେ ଆଁଗନ୍ କା ଏକ ଫୁଲ୍ ।
ସୌଭାଗ୍ୟ ଭାବ୍ ସେ ମିଲାହୁଆ, ଶ୍ୱାସୋଚ୍ଛ୍ୱାସନ୍ ସେ ହିଲା ହୁଆ,
ସଂସାର-ବିଟପ୍ ମେଁ ଖିଲା ହୁଆ,
ଝଡ଼୍‌ପଡ଼ା ଅଚାନକ ଝୁଲ୍‌ଝୁଲ୍ ।"

(ଖ) "ତେରେ ଘର୍‌କେ ଦ୍ୱାର୍ ବହୁତ୍ ହେଁ
କିସ୍ ସେ ହୋକର ଆଉଁ ମେଁ ?
ସବ୍ ଦ୍ୱାରୋଁ ପର୍ ଭୀଡ଼୍ ବଡ଼ୀ ହୈ
କୈସେ ଭିତର ଯାଉଁ ମେଁ ?"

ସେହିପରି ମୁକୁନ୍ଦଧର ପାଣ୍ଡେଙ୍କ 'ଆଁସୁ' ଓ 'ଉଦ୍‌ଗାର' ଆଦି କବିତା ପ୍ରଣିଧାନ-ଯୋଗ୍ୟ ।

ଏହି ସ୍ୱଚ୍ଛନ୍ଦ ନୂତନ ପଦ୍ଧତିର ମାର୍ଗ ଉଦ୍‌ଘାଟିତ ହେଲାବେଳେ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ରହସ୍ୟାତ୍ମକ କବିତାର ପ୍ରଚାର ଓ ପ୍ରସାର ଆରମ୍ଭ ହେଲା । କେତେକ କବି ଏକା ସଙ୍ଗରେ 'ରହସ୍ୟବାଦ' ଓ ପ୍ରତୀକବାଦ ପ୍ରତି ଏକାନ୍ତ ଲକ୍ଷ୍ୟ ରଖି ଅଗ୍ରସର ହେଲେ । ସେମାନେ ପ୍ରକୃତିର ସାଧାରଣ ଓ ଅସାଧାରଣ, ସମସ୍ତ ରୂପ ଉପରେ ପ୍ରେମ-ପୂର୍ଣ୍ଣ ଦୃଷ୍ଟି ପକାଇ, ସେଗୁଡ଼ିକର ରହସ୍ୟପୂର୍ଣ୍ଣ ପ୍ରକୃତ ସଙ୍କେତକୁ ପରୀକ୍ଷା କରି ଭାଷାକୁ ଅଧିକ ଚିତ୍ରମୟ, ସଜୀବ ଓ ମାର୍ମିକ ରୂପ ପ୍ରଦାନପୂର୍ବକ କବିତାର ଗୋଟିଏ ଅକୃତ୍ରିମ, ସ୍ୱଚ୍ଛନ୍ଦ ମାର୍ଗ ଆବିଷ୍କାର କରିବାକୁ ଲାଗିଲେ । ଏ ପ୍ରକାର କବିତା ଛାୟାବାଦର ନାମ ଗ୍ରହଣ କଲା ।

'ଛାୟାବାଦ' ଶବ୍ଦର ପ୍ରୟୋଗ ଦୁଇଟି ଅର୍ଥରେ କରାଯାଏ ବୋଲି ବୁଝିବାକୁ ହେବ; ଗୋଟିଏ ରହସ୍ୟବାଦ ଅର୍ଥରେ—ଯେଉଁ-ଠାରେ କବି ସେହି ଅନନ୍ତ ଓ ଅଜ୍ଞାତ ପ୍ରିୟତମଙ୍କୁ ଆଲମ୍ବନରୂପେ ଗ୍ରହଣ କରି ଅତ୍ୟନ୍ତ ଚିତ୍ରମୟୀ ଭାଷାରେ ପ୍ରେମର ବହୁବିଧ ଅଭି-ବ୍ୟଞ୍ଜନା କରନ୍ତି । ରହସ୍ୟାତ୍ମକ ରଚନା ସିଦ୍ଧ ପୁରୁଷ ବା ସାଧକଙ୍କ ବାଣୀର ଅନୁକରଣରେ କରାଯାଇଥାଏ । ଉକ୍ତ ବାଣୀ ସାଧକଙ୍କ ଭୁରୀୟାବସ୍ଥା ବା ସମାଧିଦଶାରେ ବ୍ୟବହୃତ ନାନା ରୂପକ ମାଧ୍ୟ-ମରେ ଆଧ୍ୟାତ୍ମିକ ଜ୍ଞାନର ଆଭାସ ଦେଇଥାଏ । ଏହି ରୂପାତ୍ମକ ଆଭାସକୁ ଇଉରୋପରେ 'ଛାୟା' (Phantasmata) କହୁଥିଲେ । ସୁତରାଂ ବଙ୍ଗ ପ୍ରଦେଶର ବ୍ରାହ୍ମ ସମାଜରେ ଉକ୍ତ ବାଣୀ ଅନୁକରଣରେ ଯେଉଁ ଆଧ୍ୟାତ୍ମିକ ଗୀତ ବା ଭଜନ ରଚିତ ହେଲା, ତାହା ଛାୟା-ବାଦ ନାମରେ କଥିତ ହେବାକୁ ଲାଗିଲା । ଧୀରେ ଧୀରେ ଧାର୍ମିକ

କ୍ଷେତ୍ରରୁ ଏହି ଶବ୍ଦ ସାହିତ୍ୟ କ୍ଷେତ୍ରକୁ ଆସିଲା ଓ ରବୀନ୍ଦ୍ରଙ୍କ ପ୍ରସିଦ୍ଧି ବଢ଼ିବା ମାତ୍ରେ ହିନ୍ଦୀ ସାହିତ୍ୟକ୍ଷେତ୍ରରେ ମଧ୍ୟ ଏହାର ଆବିର୍ଭାବ ହେଲା ।

ଦ୍ୱିତୀୟତଃ କାବ୍ୟ-ଶୈଳୀ ବା ପଦ୍ଧତିବିଶେଷର ବ୍ୟାପକ ଅର୍ଥରେ 'ଛାୟାବାଦ' ଶବ୍ଦର ପ୍ରୟୋଗ କରାଯାଏ । ସନ ୧୮୮୫ ମସିହାରେ ଫ୍ରାନ୍‌ସରେ ଗୋଟିଏ ରହସ୍ୟବାଦୀ କବିଦଳର ଆବିର୍ଭାବ ହେଲା । ଏହି କବିଗଣ ପ୍ରତୀକବାଦୀ (Symbolists) ନାମରେ ଅଭିହିତ ହେଲେ । ସେମାନଙ୍କ ରଚନା ପ୍ରସ୍ତୁତ ସ୍ଥାନରେ ଅଧିକତର ଅପ୍ରସ୍ତୁତ ପ୍ରତୀକକୁ ନେଇ ଅଗ୍ରସର ହେଲା । ତାଙ୍କ ଶୈଳୀ ପ୍ରତି ଦୃଷ୍ଟି ରଖି ଆମ ଦେଶର ସାହିତ୍ୟିକମାନେ ସାହିତ୍ୟକ୍ଷେତ୍ରରେ ପ୍ରତୀକବାଦ ଶବ୍ଦର ବ୍ୟବହାର ଚଳାଇଲେ । ଆଧ୍ୟାତ୍ମିକ ବା ଈଶ୍ୱର-ପ୍ରେମ ସମ୍ବନ୍ଧୀୟ କବିତା ବ୍ୟତୀତ ଅନ୍ୟ ସବୁପ୍ରକାର କବିତା ପାଇଁ ମଧ୍ୟ ପ୍ରତୀକ-ଶୈଳୀ ବ୍ୟବହାର କରିବାର ପ୍ରବୃତ୍ତି କବିମାନଙ୍କଠାରେ ଦେଖାଗଲା । ହିନ୍ଦୀ କବିତାରେ ମଧ୍ୟ ରହସ୍ୟବାଦୀ ରଚନା ଛଡ଼ା ଅନ୍ୟପ୍ରକାର ରଚନା ସକାଶେ 'ଛାୟାବାଦ' ଶବ୍ଦର ଯେଉଁ ବ୍ୟାପକ ଅର୍ଥ ଗୃହୀତ ହେଲା, ତାହା ଏହି ପ୍ରତୀକ-ଶୈଳୀ ଅର୍ଥରେ । ଛାୟାବାଦ ଶବ୍ଦର ସାଧାରଣ ଅର୍ଥ ହେଲା ପ୍ରସ୍ତୁତ ସ୍ଥାନରେ ତାହାର ଅଭିବ୍ୟଞ୍ଜନାକାଂକ୍ଷିଣୀ ଛାୟା ରୂପରେ ଅପ୍ରସ୍ତୁତର କଥନ । ଯଥା—ସୁଖ, ଆନନ୍ଦ, ଯୌବନ ସ୍ଥାନରେ ଉଷା, ମଧୁକାଳ ଆଦି ; ବିଷାଦ ବା ଅବସାଦ ଆଦି ସ୍ଥାନରେ ଅନ୍ଧକାର, ଶିଶିର ଋତୁ ଆଦି ଏବଂ ଦୀପ୍ତିମାନ ସ୍ଥାନରେ ସ୍ୱର୍ଣ୍ଣ ଆଦି ପ୍ରତୀକ ବା ଅପ୍ରସ୍ତୁତର କଥନ ।

ହିନ୍ଦୀ କାବ୍ୟକ୍ଷେତ୍ରରେ 'ଛାୟାବାଦ'ର ପ୍ରଥମୋକ୍ତ ଅର୍ଥାତ୍ ମୂଳ ଅର୍ଥକୁ ଆଶ୍ରୟ କରି କବିତା ରଚନା କରନ୍ତି, କବୟିତ୍ରୀ ସୁଶ୍ରୀ ମହାଦେବୀ ବର୍ମା । ଆଧୁନିକ ଛାୟାବାଦୀ ଯୁଗରେ ସେ ହେଉଛନ୍ତି

ଯଥାର୍ଥତଃ ରହସ୍ୟବାଦୀ କବି । ଜୟଶଙ୍କର 'ପ୍ରସାଦ', ସୁମିତ୍ରାନନ୍ଦନ ପନ୍ତ, ସୂର୍ଯ୍ୟକାନ୍ତ ତ୍ରିପାଠୀ 'ନିରାଲା' ଆଦିଙ୍କ ରଚନାରେ ଯଦିଓ ରହସ୍ୟବାଦ ସ୍ୱତଃ ପ୍ରଦର୍ଶିତ ହେଉଥିଲେ ହେଁ ଅଧିକତର ପ୍ରତୀକ ପଦ୍ଧତି ବା ଚିତ୍ର-ଭାଷାଶୈଳୀକୁ ଆଶ୍ରୟ କରି ଅଗ୍ରସର ହେଉଥିବାରୁ ସେମାନେ ଛାୟାବାଦୀ କବି ନାମରେ ଆଖ୍ୟାତ ।

ଉପର୍ଯ୍ୟୁକ୍ତ କବିମାନଙ୍କ ମଧ୍ୟରୁ ପ୍ରତ୍ୟେକଙ୍କ ବିଷୟରେ ପ୍ରବନ୍ଧ ଲେଖିବାକୁ ବସିଲେ ଅନାୟାସରେ ବହୁ ସାମଗ୍ରୀ ମିଳି ପାରିବ; ମାତ୍ର ଏଠାରେ ପ୍ରତ୍ୟେକଙ୍କ ବିଷୟରେ ବହୁତ ସଂକ୍ଷେପରେ କେତୋଟି କଥା କହି ଆଲୋଚ୍ୟ ପ୍ରବନ୍ଧ ସାଙ୍ଗ କରିବାକୁ ଚେଷ୍ଟା କରିବା ।

୍ଜୟଶଙ୍କର ପ୍ରସାଦ ଭାରତୀୟ ସଭ୍ୟତା ତଥା ଆର୍ଯ୍ୟ-ସଂସ୍କୃତି ସହିତ ଯଥାର୍ଥ ଭାବରେ ପରିଚିତ ଥିବାରୁ ଯୁଗେ ଯୁଗେ ସଞ୍ଚିତ ଆମ ଜାତୀୟ ସମ୍ପତ୍ତିର ଉତ୍ତରାଧିକାରୀ ଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହା ସହିତ ତାଙ୍କର ପ୍ରକୃତ କବି-ହୃଦୟର ମିଶ୍ରଣ ମଣି-କାଞ୍ଚନର ଅପୂର୍ବ ସଂଯୋଗକୁ ପ୍ରତ୍ୟକ୍ଷ ରୂପେ ଦର୍ଶାଇ ଦେଇଥିଲା । ଜୀବନର ଗହନ ଅନୁଭୂତି ଅଭିବ୍ୟକ୍ତ କରିବା ଦିଗରେ ତାଙ୍କ କବିତାଗୁଡ଼ିକ ବିଶେଷ ସମର୍ଥ । ସୂକ୍ଷ୍ମାତିସୂକ୍ଷ୍ମ ମାର୍ମିକ ଭାବନା ଉପରେ ମଧ୍ୟ ତାଙ୍କର ଅନ୍ତର୍ଦ୍ଦୃଷ୍ଟି ନିବଦ୍ଧ ଥିଲାପରି ପ୍ରତୀତ ହୁଏ । ସେ ବାହ୍ୟ ଓ ଆଭ୍ୟନ୍ତର ପ୍ରକୃତିର ଯେପରି ସମୀକରଣ କରି ପାରିଛନ୍ତି, ତାହା ପଢ଼ିଲେ ପାଠକର ମନ-ମୟୂର ନାଚି ଉଠେ । ଅଳ୍ପ ବୟସରେ ଲିଖିତ ତାଙ୍କର 'ପ୍ରେମ-ପଥିକ' ବିଶ୍ୱମୈତ୍ରୀ ଭାବନାରେ ଓତପ୍ରୋତ ।

ଜୀବନର ପ୍ରେମ-ବିଳାସମୟ ମଧୁର ବିଭାବ ପ୍ରତି ଆକୃଷ୍ଟ ହେବା ମନୁଷ୍ୟର ସ୍ୱାଭାବିକ ପ୍ରବୃତ୍ତି । ଏହା ଦର୍ଶାଇବାକୁ ଯାଇ 'ପ୍ରସାଦ ଜୀ'

ନିଜେ ସେହି ପ୍ରିୟତମଙ୍କ ମିଳନ -ବିରହ-ସଂକ୍ରାନ୍ତ ରହସ୍ୟଭାବନା କ୍ଷେତ୍ରରେ ବିଚରଣ କଲାପରି ଜଣା ପଡ଼ନ୍ତି । 'ଆଁସୁ' ତାଙ୍କର ପ୍ରଥମ ବିଶିଷ୍ଟ ରଚନା । ଏହା ଏକ ବିରହାତ୍ମକ କାବ୍ୟ । ଅତୀତ ମିଳନର ଦୁଃଖଦ ସ୍ମୃତି କବିଙ୍କ ନୟନକୁ ଅଶ୍ରୁପୂର୍ଣ୍ଣ କରି ଦେଇଛି । ଅଜ୍ଞାତ ପ୍ରିୟତମଙ୍କ ନିମିତ୍ତ ଅଶ୍ରୁବର୍ଷଣ ଅର୍ଥରେ ରହସ୍ୟବାଦର ସୂଚନା ଏହି କାବ୍ୟରେ ନିହିତ । ରହସ୍ୟବାଦ ସଙ୍ଗକୁ ମନୋମୋହିନୀ କଳ୍ପନା, ଅଭିବ୍ୟଞ୍ଜକ ଚିତ୍ରାବଳୀର ବିଚିତ୍ର ବିନ୍ୟାସ ଓ ଭାବନାର ଅତି ସୁକୁମାର ଯୋଜନା ଏହି କାବ୍ୟର ବିଶେଷତ୍ୱ । ତହିଁରେ ଅଭିବ୍ୟଞ୍ଜନାର ପ୍ରଗଲ୍‌ଭତା ଓ ବିଚିତ୍ରତା ମଧ୍ୟରେ ପ୍ରେମ-ବେଦନା-ରୂପକ ଦିବ୍ୟ ବିଭୂତି, ବିଶ୍ୱରେ ତାହାର ମଙ୍ଗଳମୟ ପ୍ରଭାବ, ସୁଖ-ଦୁଃଖ ଉଭୟଙ୍କୁ ଗ୍ରହଣ କରିବାରେ ତାହାର ଅପାର ଶକ୍ତି ଓ ତାହାର ଛାୟାରେ ସୌନ୍ଦର୍ଯ୍ୟ ଓ ମଙ୍ଗଳର ସଙ୍ଗମର ଆଭାସ ମଧ୍ୟ ମିଳିଥାଏ । 'ନିୟତିବାଦ' ଓ 'ଦୁଃଖବାଦ'ର ବିଷଣ୍ଣ ସ୍ୱର ମଧ୍ୟ କାବ୍ୟରେ ଶୁଣାଯାଏ । ଏହି ଚେତନାକୁ ଦୂରକୁ ଠେଲି, ମଦ, ତନ୍ଦ୍ରା, ସ୍ୱପ୍ନ ଓ ସଂଜ୍ଞାହୀନତା ଦଶାକୁ ଆହ୍ୱାନ କରିବା ରହସ୍ୟବାଦର ଏକ ସ୍ୱୀକୃତ ବିଧି । ପ୍ରସାଦଙ୍କ 'ଆଁସୁ' ଠାରୁ ଆରମ୍ଭ କରି 'କାମାୟନୀ' ପର୍ଯ୍ୟନ୍ତ ଏହି ବିଧି ପାଳନ କରାଯାଇଛି । କେବଳ ତାଙ୍କ ନିଜ ପାଇଁ ନୁହେଁ, କବି ଦିବାଲୋକରେ ବ୍ୟତିବ୍ୟସ୍ତ ହେଉଥିବା 'ଚିରଦଗ୍‌ଧବସୁଧା' ନିମିତ୍ତ ନିଦ୍ରାଔଷଧ ଆନୟନ ପାଇଁ ନିଶାକୁ କହୁଛନ୍ତି ।

'ଚିରଦଗ୍‌ଧ ଦୁଃଖୀ ୟହ ବସୁଧା ଆଲୋକ ମାଁଗତୀ, ତବ ଝୀ,
ଭୁମ୍, ଭୁହିନ୍ ବରସ ଦୋ କନ୍ କନ୍, ୟହ ପଗଲୀ ସୋୟେ ଅବ ଝୀ ।

ଚେତନାର ଶାନ୍ତ ବା ବିସ୍ମୃତି ଦଶାରେ 'କଲ୍ୟାଣର ବୃଷ୍ଟି ।' ସେତେବେଳେ ମିଳନର ସୁଖପ୍ରାପ୍ତି । ସୁତରାଂ ଗଭୀର ଭାବକୁ ପ୍ରସାଦ ଜୀ ମହାକାବ୍ୟ ପର୍ଯ୍ୟନ୍ତ ବଢ଼ାଇ ଦେଇଛନ୍ତି । ଏହି ମହାକବି

ସୃଷ୍ଟି ଓ ପ୍ରଳୟର ସନ୍ଧିକାଳ । ତହିଁରେ ସମସ୍ତ ନାମରୂପର ବିଲୟ ଘଟେ ।

"ଚେତନା-ଲହର ନ ଉଠେଗୀ ଜୀବନ—ସମୁଦ୍ର ଥିର ହୋଗା,
ସନ୍ଧ୍ୟା ହୋ ସର୍ଗ ପ୍ରଳୟକୀ ବିଚ୍ଛେଦ ମିଲନ୍ ଫିର୍ ହୋଗା" ।

'ଆଁସୂ' ପରେ 'ଲହର' ପ୍ରସାଦଙ୍କ ଅନ୍ୟତମ ସୁନ୍ଦର କାବ୍ୟ । ଏହା ବିଭିନ୍ନ କବିତାର ଏକ ସଂଗ୍ରହ । ତହିଁରେ ଚାରି ପାଞ୍ଚ ଗୋଟି ରଚନାରେ ରହସ୍ୟବାଦର ଦୃଷ୍ଟାନ୍ତ ମିଳେ । ସେଗୁଡ଼ିକରେ ପ୍ରିୟତମଙ୍କ ଲୁଚକାଳି ଖେଳ, ଧୀର ଗତିରେ ତାଙ୍କ ଆଗମନ ଓ କରଣଅଙ୍ଗୁଳିରେ ଚକ୍ଷୁ-ମୁଦ୍ରଣ, ପ୍ରିୟତମଙ୍କ ନିକଟକୁ ଅଭିସାର ଆଦି ରହସ୍ୟବାଦର ସାମଗ୍ରୀ ବିଦ୍ୟମାନ । ପ୍ରିୟତମ ଅଜ୍ଞାତ ହୋଇ ମଧ୍ୟ କେଉଁ ପ୍ରେମର ଆଲମ୍ବନ ଅଟନ୍ତି, ତାହା କେତୋଟି ସ୍ଥାନରେ ସୂଚିତ ।

"ତୁମ୍ ହୋ କୌନ୍ ଔର୍ ମେଂ କ୍ୟା ହୂଂ ? ଇସ୍‌ମେଂ କ୍ୟା ହୈ
ଧରା ସୁନୋ ।
ମାନସ-ଜଲଧି ରହେ ଚିର୍ ଚୁମ୍ବିତ୍, ମେରେ କ୍ଷିତିଜ୍ ! ଉଦାର୍
ବନୋ ।"

କେଉଁଠି କେଉଁଠି ପ୍ରକୃତିର ରମଣୀୟ ପକ୍ଷକୁ ନେଇ ସୁନ୍ଦର ଓ ମଧୁର ରୂପକମୟ ଗାନର ପରିବେଷଣ କରାଯାଇଅଛି ।

"ବୀତି ବିଭାବରୀ ଜାଗ୍ ରୀ !
ଅମ୍ବର—ପନ୍‌ଘଟ୍‌ମେଂ ଡୁବୋ ରହୀ
ତାରା—ଘଟ୍ ଉଷା-ନାଗରୀ ।"

ପ୍ରସାଦଙ୍କ 'କାମାୟନୀ' ହିନ୍ଦୀ ସାହିତ୍ୟରେ ଏକ ଅଦ୍ୱିତୀୟ ମହାକାବ୍ୟ । ତହିଁରେ ସେ ଦାର୍ଶନିକତାର ଆଭାସ ଓ କଳ୍ପନାର ମଧୁମୟୀ ଭୂମିକା ଉପରେ 'ଆନନ୍ଦବାଦ'ର ପ୍ରତିଷ୍ଠା କରିଅଛନ୍ତି । ବଲ୍ଲଭାଚାର୍ଯ୍ୟଙ୍କ 'କାର୍ଯ୍ୟ' ବା ଆନନ୍ଦ ଉପରେ ଏହି ଆନନ୍ଦବାଦ

ପ୍ରତିଷ୍ଠିତ ନ ହୋଇ ତାନ୍ତ୍ରିକ ଓ ଯୋଗୀଙ୍କର ଅନ୍ତର୍ଭୂମି ଉପରେ ପ୍ରତିଷ୍ଠିତ । ପ୍ରାଚୀନ ଜଳପ୍ଲାବନ ପରେ ମନୁଙ୍କଦ୍ୱାରା ମାନବ ସୃଷ୍ଟିର ପୁନର୍ବିଧାନ କଥାକୁ ନେଇ ଏହି ପ୍ରବନ୍ଧକାବ୍ୟ ରଚିତ ହୋଇଅଛି । ସଂକ୍ଷେପରେ କାବ୍ୟର ବିଷୟବସ୍ତୁ ନିମ୍ନରେ ପ୍ରଦତ୍ତ ହେଲା :—

ମନୁ ପ୍ରଥମେ ଶ୍ରଦ୍ଧାଙ୍କୁ ପତ୍ନୀ ରୂପେ ଗ୍ରହଣ କରି ତାଙ୍କୁ ତ୍ୟାଗ କଲେ ଏବଂ ଇଡ଼ାଙ୍କୁ ପତ୍ନୀ ରୂପେ ଗ୍ରହଣ କଲେ । ଇଡ଼ାଙ୍କ ସହିତ ରହି ସେ ସାରସ୍ୱତ ପ୍ରଦେଶର ରାଜଧାନୀରେ ପ୍ରଜାଶାସନର ସମସ୍ତ ବ୍ୟବସ୍ଥା କରିବାକୁ ଲାଗିଲେ । ନାନାପ୍ରକାର ନିୟମର ପ୍ରବର୍ତ୍ତନ, କୃଷି ଓ ଶିଳ୍ପର ଉନ୍ନତି ବିଧାନ, ନବ ନବ ଅସ୍ତ୍ରଶସ୍ତ୍ର ପ୍ରଚଳନ ଓ ଜନତାର ଶ୍ରେଣୀବିଭାଗ ଆଦି କାର୍ଯ୍ୟ କରିବାଦ୍ୱାରା ମନୁଙ୍କ ମନରେ ଅହଂଭାବର ଉଦୟ ହୁଏ । ପ୍ରଜା ତାଙ୍କର ଦୁର୍ବ୍ୟବହାରରେ ବିକ୍ଷୁବ୍‌ଧ ହୋଇ ବିଦ୍ରୋହ କରନ୍ତି । ଉକ୍ତ ଯୁଦ୍ଧରେ ମନୁ ଭୂପତିତ ହୋଇ ମୂର୍ଚ୍ଛା ଯାଆନ୍ତି । ଏତେଣେ ଶ୍ରଦ୍ଧା ଏ ପ୍ରକାର ବିପ୍ଲବର ସ୍ୱପ୍ନ ଦେଖି ନିଜ କୁମାର ସହିତ ମନୁଙ୍କୁ ଖୋଜି ଖୋଜି ସେହି ସ୍ଥାନରେ ଉପସ୍ଥିତ ହୁଅନ୍ତି । ତାଙ୍କୁ ଦେଖି ମନୁଙ୍କ ହୃଦୟ କ୍ଷୋଭ ଓ ଅନୁତାପରେ ପୂର୍ଣ୍ଣ ହୋଇଯାଏ । ରାତି ହୁଅନ୍ତେ ମନୁ ନୀରବ ଭାବରେ କୌଣସି ଅଜ୍ଞାତ ସ୍ଥାନକୁ ଚାଲି ଯାଆନ୍ତି । ଶ୍ରଦ୍ଧା ଓ ଇଡ଼ାଙ୍କ ମଧ୍ୟରେ କଥାବାର୍ତ୍ତା ହୁଏ । ଅଧିକାର ବ୍ୟବସ୍ଥାର ଏହା ଭୟଙ୍କର ପରିଣାମ ବୋଲି ଇଡ଼ା ଶ୍ରଦ୍ଧାଙ୍କ ଆଗରେ ପ୍ରକାଶ କରନ୍ତି । ପରିଶେଷରେ ଶ୍ରଦ୍ଧା ତାଙ୍କ କୁମାରଙ୍କୁ ଇଡ଼ାଙ୍କ ହାତରେ ସମର୍ପଣ କରି ମନୁଙ୍କ ସନ୍ଧାନରେ ଅଗ୍ରସର ହୁଅନ୍ତି । ସେ ସରସ୍ୱତୀ ନଦୀକୂଳସ୍ଥ ଏକ ଗୁମ୍ଫାରେ ମନୁଙ୍କୁ ଧ୍ୟାନମଗ୍ନ ଅବସ୍ଥାରେ ଦେଖିଲେ । ମନୁ 'ସେହି ସମୟରେ ନୟନ ମୁଦ୍ରିତ ଅବସ୍ଥାରେ ଚିତ୍‌ଶକ୍ତିର ଅନ୍ତର୍ନାଦ ଶୁଣୁଥିଲେ । ଅଖିଳ ବିଶ୍ୱ ମଧ୍ୟରେ ସେ ନଟରାଜଙ୍କ ନୃତ୍ୟ ଦେଖୁଥିଲେ । ଶ୍ରଦ୍ଧାଙ୍କୁ ଦେଖିବା ମାତ୍ରେ

ମନୁ ତାହାଙ୍କୁ ଶିବଙ୍କ ଚରଣ ପର୍ଯ୍ୟନ୍ତ ଚଳାଇ ନେବାକୁ ଅନୁରୋଧ କଲେ । ଶ୍ରଦ୍ଧା ଆଗେ ଆଗେ ଓ ମନୁ ତାଙ୍କ ପଛରେ ହିମାଳୟ ମାର୍ଗରେ ଆରୋହଣ କଲେ । ଶେଷରେ ସେ ଏକ ନିରାଧାର ଶୂନ୍ୟ-ମଣ୍ଡଳରେ ପହଞ୍ଚିଲା ପରି ତାଙ୍କୁ ବୋଧ ହେଲା । ଭୂମଣ୍ଡଳ ରେଖାର ଚନ୍ଦ୍ରବର୍ଣ୍ଣ ସେଠାରେ ନାହିଁ । ଏଠାରେ କବି ପୂର୍ଣ୍ଣ ରହସ୍ୟଦର୍ଶୀରୂପ ଧାରଣ କରନ୍ତି ଏବଂ ମନୁଙ୍କ ହୃଦୟରେ ଏକ ନୂତନ ଚେତନାର ଉଦୟ ହେଲା ବୋଲି କହନ୍ତି । ବର୍ତ୍ତମାନ ମନୁଙ୍କୁ ତ୍ରିବିକ୍ (Three dimensions) ବିଶ୍ବ ଓ ତ୍ରିଭୁବନର ପ୍ରତିନିଧି ତିନିଗୋଟି ଭିନ୍ନ ଆଲୋକ ବିନ୍ଦୁ ଦୃଷ୍ଟିଗୋଚର ହୁଏ । ଏହି ବିନ୍ଦୁତ୍ରୟ 'ଜ୍ଞାନ','ଇଚ୍ଛା' ଓ 'କ୍ରିୟା'ର କେନ୍ଦ୍ରସ୍ୱରୂପ । ଶ୍ରଦ୍ଧା ପ୍ରତ୍ୟେକ ବିନ୍ଦୁର ରହସ୍ୟ ମନୁଙ୍କ ଆଗରେ ବିଶ୍ଳେଷଣ କରନ୍ତି ।

ଏହି ଜ୍ୟୋତିର୍ମୟ ବିନ୍ଦୁତ୍ରୟକୁ ଦେଖାଇ ଶ୍ରଦ୍ଧା କହିଲେ, "ଏହା ତ୍ରିପୁର; ଜୀବନରେ ଏହି ତିନିଙ୍କର ମିଳନ ନ ହେବା ବାସ୍ତ-ବରେ ବିଡ଼ମ୍ବନା । ଜ୍ଞାନ ଭିନ୍ନ, କ୍ରିୟା ମଧ ଭିନ୍ନ, ମନର ଇଚ୍ଛା କିପରି ପୂରିବ ?"

"ଜ୍ଞାନ ଦୂର କୁଛ୍, କ୍ରିୟା ଭିନ୍ନ ହୋ,
କୈସେ ପୂର୍ଣ୍ଣ ହୋ ଇଚ୍ଛା ମନ କୀ,
ଏକ ଦୂସରେ ସେ ମିଲ୍ ନ ସକେ,
ୟହ ବିଡ଼ମ୍ବନା ହୈ ଜୀବନ କୀ ।"

ଏହା କହିବା ମାତ୍ରେ ଶ୍ରଦ୍ଧା ହସି ଉଠିଲେ । ଜ୍ୟୋତିର ଗୋଟିଏ ରେଖା ତିନି ବିନ୍ଦୁ ମଧ୍ୟ ଦେଇ ଧାବିତହେଲା ଏବଂ ହଠାତ୍ ବିନ୍ଦୁତ୍ରୟ ଏକ ହୋଇ ପ୍ରଜ୍ୱଳିତ ହୋଇ ଉଠିଲେ । ସମଗ୍ର ବିଶ୍ୱରେ ଶିଙ୍ଗା ଓ ଡମ୍ବରୁର ନିନାଦ ଶୁଣାଗଲା । ସେହି ଅନାହତ ନାଦରେ ମନୁ ଲୀନ ହୋଇଗଲେ । ଏହି ଆନନ୍ଦପ୍ରାପ୍ତି ମହାକାବ୍ୟର ହେଲା

ଚରମ ଲକ୍ଷ୍ୟ । ସେତିକି ବେଳେ କୁମାର ସହିତ ଇଡ଼ା ମନୁଙ୍କ ନିକଟରେ ଉପସ୍ଥିତ ହେଲେ । ସେ ପୁରୁଷପ୍ରକୃତିର ମିଳନ ଦେଖି ଆନନ୍ଦରେ ବିଭୋର ହୋଇ ଉଠିଲେ । ମନୁ ପୁନର୍ବାର କୈଳାସ ପର୍ବତ ଆଡ଼କୁ ସଙ୍କେତ କରି ଏକ ଆନନ୍ଦଲୋକର ବର୍ଣ୍ଣନା କଲେ । ସେଠାରେ ପାପତାପ କିଛି ନାହିଁ, ସବୁ ସମରସ । 'ଅଭେଦରେ ଭେଦ'—ଏହି ପ୍ରସିଦ୍ଧ ସିଦ୍ଧାନ୍ତକୁ ଲକ୍ଷ୍ୟ କରି ମନୁ କହନ୍ତି—

"ଅପନେ ଦୁଃଖ୍ ସୁଖ୍ ସେ ପୁଲକିତ୍ ୟହ ମୂର୍ତ୍ତ ବିଶ୍ୱ ସଚରାଚର୍,
ଚିତ୍‌କା ବିରାଟ୍ ବପୁ ମଙ୍ଗଲ ୟହ ସତ୍ୟ ସତତ୍ ଚିର୍ ସୁନ୍ଦର ।"

ରହସ୍ୟବାଦ ସଙ୍ଗକୁ ରୂପକତତ୍ତ୍ୱ ଓ ପ୍ରତୀକାତ୍ମକତା 'କାମା-ୟନୀ'ର ଏକ ସ୍ୱତନ୍ତ୍ର ବୈଶିଷ୍ଟ୍ୟ । 'ରୂପକ' ଭାବନା ଅନୁସାରେ ଶ୍ରଦ୍ଧା ବିଶ୍ୱାସ-ସମନ୍ୱିତ ରାଗାତ୍ମିକା ପ୍ରବୃତ୍ତି ଓ ଇଡ଼ା ବ୍ୟବସାୟାତ୍ମିକା ବୁଦ୍ଧି । କବି ଶ୍ରଦ୍ଧାକୁ ମୃଦୁତା, ପ୍ରେମ ଓ କରୁଣାର ପ୍ରବର୍ତ୍ତକ ତଥା ଯଥାର୍ଥ ଆନନ୍ଦଲାଭର ସହାୟକରୂପେ ଚିତ୍ରିତ କରିଅଛନ୍ତି । ଇଡ଼ା ବା ବୁଦ୍ଧି ମାନବକୁ ଅନେକ ଶ୍ରେଣୀ ବିଭାଗ ଓ ବ୍ୟବସ୍ଥାରେ ପ୍ରବୃତ୍ତ କରାଏ ସତ, ମାତ୍ର ତାହାର କର୍ମରେ ନାନାପ୍ରକାର ସମସ୍ୟା ସୃଷ୍ଟି କରି ତାକୁ ବିବ୍ରତ କରି ପକାଏ । ଏହିପରି ନାରୀ ରୂପରେ ଶ୍ରଦ୍ଧା ହୃଦୟ ତଥା ଇଡ଼ା ମସ୍ତିଷ୍କର ପ୍ରତିନିଧିତ୍ୱ କରୁଅଛନ୍ତି ।

ଏହି ମହାକାବ୍ୟର ଆଭ୍ୟନ୍ତରୀଣ ଯୋଜନା ବା ସମଷ୍ଟିଗତ ପ୍ରଭାବ ପ୍ରତି ଦୃଷ୍ଟି ନ ଦେଇ ଯଦି ଆମେ ଶ୍ରଦ୍ଧା, କାମ, ଲଜ୍ଜା, ଇଡ଼ା ପ୍ରଭୃତିଙ୍କୁ ପୃଥକ୍ ରୂପେ ଗ୍ରହଣ କରୁଁ, ତେବେ ଆମ୍ଭମାନଙ୍କ ଆଗରେ ଅତ୍ୟନ୍ତ ଚମତ୍କାରୀ କଳ୍ପନା ଓ ଅଭିବ୍ୟଞ୍ଜନାର ପରମ ରମଣୀୟ ପଦ୍ଧତି ପରିଦୃଷ୍ଟ ହୁଏ । ଏହି ସବୁ ପ୍ରବୃତ୍ତିର ଆଭ୍ୟନ୍ତରୀଣ ପ୍ରେରଣା ଓ ବାହ୍ୟ କାର୍ଯ୍ୟକଳାପକୁ ଅତ୍ୟନ୍ତ ମାର୍ମିକ ଭାବରେ ପରୀକ୍ଷା କରି କବି ଏମାନଙ୍କର ନର-ନାରୀ ରୂପ ଉଦ୍‌ଭାବନ କରିଅଛନ୍ତି । ସ୍ଥଳେ

ସ୍ଥଳେ ପ୍ରକୃତିର ମଧୁର, ଭବ୍ୟ ଓ ଚିତ୍ତାକର୍ଷକ ବିଭୂତି-ସମୂହର ଯୋଜନା ଅତ୍ୟନ୍ତ ମର୍ମସ୍ପର୍ଶୀ ହୋଇ ପଡ଼ିଛି । ପ୍ରକୃତିର ଧ୍ୱଂସକାରୀ ସ୍ୱାଭାବ ରୂପବେଗର ଚିତ୍ରଣ ବ୍ୟାପକ ରୂପେ କରାଯାଇଛି । ଏହିରୂପେ ପ୍ରସାଦ ଜୀ ପ୍ରବନ୍ଧ-କ୍ଷେତ୍ରରେ ମଧ୍ୟ ଛାୟାବାଦର ଚିତ୍ରପ୍ରଧାନ ଓ ଲାକ୍ଷଣିକ ଶୈଳୀକୁ ସଫଳ ଭାବରେ ଦର୍ଶାଇ ଯାଇଅଛନ୍ତି ।

ଛାୟାବାଦୀ କବିମାନଙ୍କ ମଧ୍ୟରେ କେବଳ ସୁମିତ୍ରାନନ୍ଦନ ପନ୍ତ ପ୍ରକୃତି ସହିତ ପ୍ରତ୍ୟକ୍ଷ ପ୍ରେମ-ସମ୍ବନ୍ଧ ସ୍ଥାପନ କରିଥିବା କଥା ପରି-ଲକ୍ଷିତ ହୁଏ । ପ୍ରକୃତିର ଅତ୍ୟନ୍ତ ରମଣୀୟ କ୍ଷେତ୍ର ପ୍ରତି ତାଙ୍କ ହୃଦୟ ସ୍ୱଭାବତଃ ଆକୃଷ୍ଟ ଓ ତାହାରି ମଧ୍ୟରେ ହିଁ ବିକଶିତ ହୋଇଅଛି । ଏହି ହେତୁ ତାଙ୍କ ରଚନାରେ 'ଛାୟାବାଦ' ଶବ୍ଦ ପ୍ରଧାନତଃ ଶୈଳୀ ଅର୍ଥରେ ଅର୍ଥାତ୍ ଚିତ୍ରଭାଷା ପଦ୍ଧତି ଅର୍ଥରେ ପ୍ରଦର୍ଶିତ । ରହସ୍ୟବାଦର ରୂଢ଼ିଗତ (Dogmatic) ଉଦାହରଣ ପ୍ରସ୍ତୁତ କରିବା ଦିଗରେ ତାଙ୍କ ପ୍ରତିଭା ବହୁତ କମ୍ ପ୍ରବୃତ୍ତ ହୋଇଅଛି । ଯେଉଁଠି ଏହି ରହସ୍ୟଭାବନା ଦର୍ଶାଇବାକୁ ସେ ଚେଷ୍ଟା କରିଅଛନ୍ତି, ତାହା ଅତ୍ୟନ୍ତ ସ୍ୱାଭାବିକ ରୀତିରେ ପ୍ରଦର୍ଶିତ ।

ତାଙ୍କ କୃତ କବିତା-ସଂଗ୍ରହ 'ପଲ୍ଲବ' ଅନ୍ତର୍ଗତ 'ସ୍ୱପ୍ନ' ଓ 'ମୌନ ନିମନ୍ତ୍ରଣ' କବିତା ଦୁଇଟି ରହସ୍ୟାତ୍ମକ । ଏହି ରହସ୍ୟମୟ ଜଗତର ବିବିଧ ରୂପ ଦର୍ଶନରେ ପ୍ରତ୍ୟେକ ସହୃଦୟ ବ୍ୟକ୍ତି ମନରେ ତାଙ୍କର ପ୍ରଦର୍ଶିତ ରହସ୍ୟଭାବନା କେବେ କେବେ ଜାଗ୍ରତ ହୋଇଥାଏ । ବ୍ୟକ୍ତ ଜଗତର ନାନା ରୂପ ଓ ବ୍ୟପାର ମଧ୍ୟରେ କୌଣସି ଅଜ୍ଞାତ ସତ୍ତାର ଅନୁଭବ କରି କବି ଏହାକୁ କେବଳ ଅତୃପ୍ତ ଜିଜ୍ଞାସାର ବିଷୟରୂପେ ପ୍ରକାଶ କରିଅଛନ୍ତି । ଉଦାହରଣ ସ୍ୱରୂପ :—

"ସ୍ତବ୍ଧ ଜ୍ୟୋସ୍ନା ମେଁ ଜବ୍ ସଂସାର
ଚକିତ୍ ରହତା ଶିଶୁ-ସା ନାଦାନ୍,
ଦୀପ୍ତ କେ ପଲକୋଂପର୍ ସୁକୁମାର
ବିଚରତେ ହୈଂ ଜବ୍ ସ୍ୱପ୍ନ ଅଜାନ୍ ।
ନ ଜାନେ ନକ୍ଷତ୍ରୋଂସେ କୌନ୍,
ନିମନ୍ତ୍ରଣ ମୁଝ୍‌କୋ ଦେତା ମୌନ୍ ।"

'ଶିଶୁ'କୁ ସମ୍ବୋଧନ କରି ଅତ୍ୟନ୍ତ ସରଳ ଭାବରେ କବି ଜଗତର ପାରମାର୍ଥିକ ସ୍ୱରୂପ ବିଷୟରେ ଜିଜ୍ଞାସା କରିଅଛନ୍ତି ।

"ନ ଅପନା ଜ୍ଞାନ, ନ ଜଗତ୍ କା ଜ୍ଞାନ,
ପରିଚିତ୍ ହୈ ନିଜ ନୟନ୍, ନ କାନ୍ ।
ଦୀଖ୍‌ତା ହୈ ଜଗ୍ କୈସା, ତାତ୍ ।
ନାମ୍ ଗୁଣ୍, ରୂପ୍ ଅଜ୍ଞାନ୍ ।"

ପ୍ରକୃତି ପ୍ରତି କବିଙ୍କର ଆସକ୍ତି ଥିବା କଥା ପୂର୍ବରୁ କୁହାଯାଇଅଛି । ପ୍ରକୃତିର ସୁନ୍ଦର ରୂପର ଆହ୍ଲାଦମୟୀ ଅନୁଭୂତି ତାଙ୍କ ରଚିତ 'ବୀଣା'ରେ ଅଧିକାଂଶ ସ୍ଥଳେ ପ୍ରଦର୍ଶିତ । ସୌନ୍ଦର୍ଯ୍ୟର ଆହ୍ଲାଦ ତାଙ୍କ କଳ୍ପନାକୁ ଉତ୍ତେଜିତ କରି ତାଙ୍କୁ ଅପ୍ରସ୍ତୁତ ରୂପଯୋଜନା-ଗଠନରେ ପ୍ରବୃତ୍ତ କରାଏ । 'ବୀଣା'ରେ ବସନ୍ତ ଋତୁର ଆଗମନ ନିମନ୍ତେ କବିଙ୍କର ଅପ୍ରସ୍ତୁତ ରୂପଯୋଜନା ଅତ୍ୟନ୍ତ ଉପଭୋଗ୍ୟ—

"ପ୍ରଥମ୍ ରଶ୍ମି କା ଆନା ରଙ୍ଗିଣି !
ତୁନେ କୈସେ ପହଚାନା ?
କହାଁ କହାଁ ହେ ବାଲ୍ ବିହଙ୍ଗିନି !
ପାୟା ତୁନେ ଯହ ଗାନା ?
ନିରାକାର୍ ତମ୍ ମାନୋ ସହସା

ଜ୍ୟୋତିପୁଞ୍ଜ ମେଁ ହୋ ସାକାର୍,
ବଦଲ୍ ଗୟା ଦ୍ରୁତ ଜଗଜ୍ଜାଲ ମେଁ
ଧର୍‌କର ନାମରୂପ୍ ନାନା ।
ଖୁଲେ ପଲକ୍, ଫୈଲୀ ସୁବର୍ଣ୍ଣ ଛବି,
ଖିଲୀ ସୁରଭି ଡୋଲେ ମଧୁବାଲ୍ ।
ସ୍ପନ୍ଦନ, କମ୍ପନ୍, ନବ ଜୀବନ୍
ଫିର୍ ସୀଖା ଜଗ୍‌ନେ ଅପନାନା ।"

ପନ୍ତଜୀ 'ଗୁଞ୍ଜନ'ରେ ଜଗତ ଓ ଜୀବନର ପ୍ରକୃତ କ୍ଷେତ୍ରରେ ଅଧିକ ଅଗ୍ରସର ହୋଇଥିବାର ଆମ୍ଭେମାନେ ଦେଖୁଁ । ପ୍ରତ୍ୟକ୍ଷବୋଧ ପ୍ରତି ଅତୃପ୍ତ ହେଲେ ମଧ୍ୟ କଳ୍ପନାର ରୁଚିରତା ମଧ୍ୟରେ ତୃପ୍ତି ଲାଭ ଏବଂ ବୁଦ୍ଧି—ବ୍ୟାପାରରେ କ୍ଳାନ୍ତ ହୋଇ ମଧ୍ୟ ରହସ୍ୟର ଗୁମ୍ଫାରେ ବିଶ୍ରାମ କରିବା କବିଙ୍କର ଲକ୍ଷ୍ୟ ଥିଲା ପରି ପ୍ରତୀତ ହୁଏ । ଜୀବନର ଉଦ୍ଦେଶ୍ୟ ସମ୍ବନ୍ଧରେ କବି କହନ୍ତି ଯେ, ମନୁଷ୍ୟ ପକ୍ଷରେ ଦିଗନ୍ତ-ବିସ୍ତାରି ସୁଷମାରାଜିଦ୍ୱାରା ତାହାର ହୃଦୟକୁ ସମ୍ପନ୍ନ କରିବା ଆବଶ୍ୟକ ।

"କ୍ୟା ୟହ ଜୀବନ୍ ? ସାଗର୍ ମେଁ
ଜଲ୍‌ଭାର୍ ମୁଖର୍ ଭର୍ ଦେନା !
କୁସୁମିତ ପୁଲିନୋଂ କୀ କ୍ରୀଡ଼ା
କ୍ଷଣାସେ ତନିକ୍ ନ ଲେନା ?"

କିନ୍ତୁ ଏହି ଜଗତରେ ସୁଖସୁଷମା ସହିତ ଦୁଃଖ ମଧ୍ୟ ରହିଛି । ଜଗତର ସୁଖ-ଦୁଃଖାତ୍ମକ ସ୍ୱରୂପ ସହିତ କବି ତାଙ୍କ ହୃଦୟର ସାମଞ୍ଜସ୍ୟ ସ୍ଥାପନ କରି ନେଇଛନ୍ତି ।

"ସୁଖ୍ ଦୁଃଖ୍‌କେ ମଧୁର୍ ମିଲନ୍‌ସେ
ୟହ ଜୀବନ ହୋ ପରିପୂରନ୍,

ଫିର୍ ଘନ ମେଁ ଓଝଲ୍ ହୋ ଶଶୀ
ଫିର୍ ଶଶୀସେ ଓଝଲ୍ ହୋ ଘନ୍ ।"

'ଯୁଗାନ୍ତ'ରେ କବି କେବଳ ରୂପ, ରଙ୍ଗ, କାନ୍ତି, ସୁଖ-ସୌରଭ ବିଶିଷ୍ଟ ସୌନ୍ଦର୍ଯ୍ୟରୁ ଅପସରି ଜୀବନସୌନ୍ଦର୍ଯ୍ୟର ସତ୍ୟାଶ୍ରିତ କଳ୍ପନାରେ ପ୍ରବୃତ୍ତ ହୁଅନ୍ତି । ସେ ବହିର୍ଜଗତରେ ସୌନ୍ଦର୍ଯ୍ୟ, ସ୍ନେହ, ଉଲ୍ଲାସର ଅଭାବ ଉପଲବ୍ଧି କରିଅଛନ୍ତି । ସୁତରାଂ ସେ ଜୀବନ-ସୌନ୍ଦର୍ଯ୍ୟର ଭାବନା ମନ ମଧ୍ୟରେ ପୋଷଣ କରି ତାହାକୁ ଜଗତରେ ବିସ୍ତୃତ କରିବାକୁ ଇଚ୍ଛୁକ ।

"ସୁନ୍ଦରତାକା ଆଲୋକ୍ ସ୍ରୋତ ହୈ
ଫୁଟ୍ ପଡ଼ା ମେରେ ମନ ମେଁ,
ଜିସ୍‌ସେ ନବ ଜୀବନକା ପ୍ରଭାତ ହୋଗା
ଫିର୍ ଜଗକେ ଆଙ୍ଗନ ମେଁ ।"

× × × ×

ମେଁ ସୃଷ୍ଟି ଏକ ରଚ୍ ରହା
ନଓ୍ବଲ ଭାବୀ ମାନବକେ ହିତ୍, ଖାତିର୍ ।
ସୌନ୍ଦର୍ଯ୍ୟ, ସ୍ନେହ, ଉଲ୍ଲାସ ମୁଝେ
ମିଲ୍‌ସକା ନହୀଁ ଜଗମେଁ ବାହର୍ ।

ସୁତରାଂ କବି ପ୍ରାର୍ଥନା କରନ୍ତି—

ଜଗଜୀବନମେଂ ଜୋ ଚିର୍ ମହାନ୍
ସୌନ୍ଦର୍ଯ୍ୟପୂର୍ଣ୍ଣ ଔ ସତ୍ୟପ୍ରାଣ ।
ମେଁ ଉସ୍‌କା ପ୍ରେମୀ ବନୁଁ ନାଥ୍ !
ଜିସ୍‌ମେଁ ମାନବ ହିତ୍ ହୋ ସମାନ୍ ।

ଏହିପରି ପନ୍ତଜୀଙ୍କ ବହୁ ରଚନାରେ କଳ୍ପନାର ପୂର୍ଣ୍ଣ ମନୋହାରିତା ସଙ୍ଗେ ହୃଦୟର ନିତ୍ୟ ଓ ସ୍ଥାୟୀ ପ୍ରବୃତ୍ତିର ଅଭିବ୍ୟଞ୍ଜନା

ମିଳିଥାଏ । କୌଣସି ପ୍ରକାର 'ବାଦ' ବନ୍ଧନରୁ ତାଙ୍କ ବାଣୀ କ୍ରମଶଃ ମୁକ୍ତିଲାଭ କରୁଥିଲା ପରି ଜଣାଯାଏ । ଚମତ୍କାର ଭାଷା ଓ ଲାକ୍ଷଣିକ ବୈଚିତ୍ର୍ୟର ଅନାବଶ୍ୟକ ପ୍ରଦର୍ଶନ ଆଉ ତାଙ୍କ ପ୍ରବୃତ୍ତି ହୋଇ ନାହିଁ । ଏଗୁଡ଼ିକ ଭାଷା ଓ ଅର୍ଥର ସ୍ୱାଭାବିକ ଗତିରେ ବାଧକ ବୋଲି ବିଚାରି କବି ଛାୟାବାଦ ଓ ରହସ୍ୟବାଦରୁ ତାହାର ସ୍ୱାଭାବିକ ସ୍ୱଚ୍ଛନ୍ଦତା (True romanticism) ଆଡ଼କୁ ଅଗ୍ରସର ହେଉଅଛନ୍ତି ।

ନିରାଲା ଜୀ ହିନ୍ଦୀସାହିତ୍ୟରେ ଶ୍ରେଷ୍ଠ ଦାର୍ଶନିକ କବି । ଇଂରାଜୀ କବି ବ୍ରାଉନିଙ୍ଗଙ୍କ ଦାର୍ଶନିକ ଦୃଷ୍ଟିକୋଣ ସହିତ ଏହାଙ୍କର ଦୃଷ୍ଟିକୋଣ ସମାନ । ଏହାଙ୍କର ରହସ୍ୟାତ୍ମକ ରଚନା ବଙ୍ଗଳାରେ ବିକଶିତ ଆଧ୍ୟାତ୍ମିକତାର ରୂପରଙ୍ଗ ଧରି ଗଢ଼ିଉଠିଛି । ରଚନାର ପ୍ରାରମ୍ଭ କାଳରେ କବି ସ୍ୱାମୀ ବିବେକାନନ୍ଦ ଓ ରବୀନ୍ଦ୍ରନାଥ ଠାକୁରଙ୍କ କେତେକ କବିତା ଅନୁବାଦ କରିଅଛନ୍ତି । ଅଦ୍ୱୈତବାଦର ବେଦାନ୍ତୀ ସ୍ୱରୂପକୁ ଗ୍ରହଣ କରିଥିବା ହେତୁ ତାଙ୍କ ରହସ୍ୟାତ୍ମକ କବିତାରେ ଭାରତୀୟ ଦାର୍ଶନିକ ସିଦ୍ଧାନ୍ତର ନିଦର୍ଶନ ସ୍ଥଳେ ସ୍ଥଳେ ମିଳିଥାଏ । ଏହି ବୈଶିଷ୍ଟ୍ୟ ଛାଡ଼ିଦେଲେ ତାଙ୍କ ରହସ୍ୟାତ୍ମକ କବିତା-ଗୁଡ଼ିକ ଅନ୍ୟାନ୍ୟ ଛାୟାବାଦୀ କବିଙ୍କର ମାଧୁର୍ଯ୍ୟ ଭାବନାରେ ଓତ ପ୍ରୋତ । 'ରେଖା' ନାମକ କବିତାରେ କବି ପ୍ରଥମ ପ୍ରେମର ଉଦୟ ବିଷୟରେ ଯେଉଁ ବର୍ଣ୍ଣନା କରିଅଛନ୍ତି, ତାହା ସର୍ବସ୍ୱ ଏକ ମାତ୍ର ଚେତନସତ୍ତାର ଅନୁଭୂତିରୂପେ ଆମ ଆଗରେ ଉପସ୍ଥିତ ହୁଏ ।

"ଯୌବନକେ ଦ୍ୱାର୍‌ପର ପ୍ରଥମ୍ ଥା ଆୟା ଜବ୍
ସ୍ରୋତ୍ ସୌନ୍ଦର୍ଯ୍ୟକା,
ବୀଚିୟୋଁ ମେଁ କଲରବ୍ ମୁଖରିତ୍ ପ୍ରଣୟକା
ଥା ମଧୁର୍ ଆକର୍ଷଣମୟ
ମଜ୍ଜନାବେଦନ୍ ମୃଦୁ ଫୁଟ୍ ତା ସାଗର୍ ମେଁ ।

× × ×

ସବ୍ କୁଛ୍ ଥୋ ଥା ଅସାର୍
ଅସ୍ତୁ, ଓ୍ଵହ ପ୍ୟାର୍ ?
ସବ୍ ଚେତନ୍ ଜୋ ଦେଖ୍ତା
ସ୍ପର୍ଶ ମେଂ ଅନୁଭବ୍ ରୋମାଞ୍ଚ୍,
ହର୍ଷ ରୂପ୍‌ମେଂ ପରିଚୟ୍ ।

× × × ×

ଖୀଂଚ୍ ଉସୀନେ ଥା ହୃଦୟ୍ ଯୁଦ୍ଧ
ଜଡ଼ୋଂ ମେଂ ଚେତନ ଗତି କର୍ଷଣ ମିଲ୍ତା କହାଁ ?

କବିଙ୍କର 'ତୁମ୍ ଔର ମେଂ' କବିତା ରହସ୍ୟବାଦର ସର୍ବୋତ୍କୃଷ୍ଟ ଉଦାହରଣ । ଜୀବାତ୍ମା ଓ ପରମାତ୍ମାଙ୍କର ଆନନ୍ଦ ଓ କାରଣ-କାର୍ଯ୍ୟ ସମ୍ବନ୍ଧର ଅଭିବ୍ୟକ୍ତି ଯେପରି ସୁନ୍ଦରରୂପେ ତାଙ୍କ କବିତାରେ ପ୍ରଦର୍ଶିତ ହୋଇଛି, ତାହା ଅନ୍ୟତ୍ର ମିଳିବା କଠିନ ।

"ତୁମ୍ ହୋ ପ୍ରିୟତମ୍ ମଧୁମାସ୍, ଔର ମେଁ ପିକ୍, କଲକୂଜନ୍ ତାନ୍,
ତୁମ୍ ମଦନ ପଞ୍ଚଶର-ହସ୍ତ, ଔର ମେଁ ହୁଁ ମୁଗ୍ଧା ଅନଜାନ୍ ;

ତୁମ୍ ଅମ୍ବର, ମେଁ ଦିଗ୍‌ବସନା ;
ତୁମ୍ ଚିତ୍ରକାର ଘନ ପଟଲ ଶ୍ୟାମ,
ମେଁ ତଡ଼ିତ୍ ତୂଲିକା ରଚନା ।

ତୁମ୍ ରଣ-ତାଣ୍ଡବ-ଉନ୍ମାଦ ନୃତ୍ୟ, ମେଂ ଯୁବତି ମଧୁର ନୂପୁର-ଧ୍ୱନି,
ତୁମ୍ ନାଦ ବେଦ ଆକାର ସାର, ମେଂ କବି-ଶୃଙ୍ଗାର- ଶିରୋମଣି ।

ତୁମ୍ ଯଶ ହୋ ମେଁଂ ହୁଁ ପ୍ରାପ୍ତି,
ତୁମ୍ କୁନ୍ଦ ଇନ୍ଦୁ-ଅରବିନ୍ଦ ଶୁଭ୍ର,
ତୋ ମେଁ ହୁଁ ନିର୍ମଳ ବ୍ୟାପ୍ତି ।"

ଉପରୋକ୍ତ ପଙ୍‌କ୍ତିମାନଙ୍କରେ ଦ୍ୱୈତାଦ୍ୱୈତ ଭାବନାକୁ ସୁନ୍ଦରରୂପେ କାବ୍ୟବଦ୍ଧ କରାଯାଇଅଛି । ଏଠାରେ ଛାୟାବାଦ ଦେହାନ୍ତରେ ବସ୍ତୁରୂପେ ରହସ୍ୟବାଦର ପ୍ରତିଷ୍ଠା ସଫଳ ହୋଇଛି । ଏପରି କବିତା ହିନ୍ଦୀସାହିତ୍ୟରେ ଅମୂଲ୍ୟ ବସ୍ତୁ ।

ଛାୟାବାଦୀ କବିମାନଙ୍କ ମଧ୍ୟରେ ମହାଦେବୀ ବର୍ମା ଯଥାର୍ଥତଃ ରହସ୍ୟ-ବାଦୀ କବି । ସେହି ଅଜ୍ଞାତ ପ୍ରିୟତମଙ୍କ ନିମନ୍ତେ ବେଦନା ହିଁ ଏହାଙ୍କ ହୃଦୟର ଭାବକେନ୍ଦ୍ର । ଏହି କେନ୍ଦ୍ରରୁ ଅନେକ ପ୍ରକାର ଭାବନାର ସ୍ରୋତ ଛୁଟି ପଡ଼ିଛି । ବେଦନା ପ୍ରତି ସେ ତାଙ୍କ ସ୍ୱାଭାବିକ ପ୍ରେମ ବ୍ୟକ୍ତ କରିଅଛନ୍ତି । ବେଦନା ସହିତ ମିଶି ରହିବା ତାଙ୍କର ଏକାନ୍ତ କାମ୍ୟ । ବେଦନା ଓ ପୀଡ଼ା ମଧ୍ୟରେ ପ୍ରିୟତମଙ୍କର ସନ୍ଧାନ କରିବା ପାଇଁ ସେ ଉତ୍‌କଣ୍ଠିତ ।

"ତୁମ୍ କୋ ପୀଡ଼ାମେଂ ଢୁଁଢ଼ା,
ତୁମ୍ ମେଂ ଢୁଁଢୁଂଗୀ ପୀଡ଼ା ।"

ତାଙ୍କ ଅଜ୍ଞାତ ପ୍ରିୟତମ ଦୁଃଖର ଘୋର ଅନ୍ଧକାର ମଧ୍ୟରେ ଆସନ୍ତି ବୋଲି କବୟିତ୍ରୀଙ୍କ ଦୃଢ଼ ବିଶ୍ୱାସ । ଜୀବନରେ ଦୁଃଖର ରାତି ସର୍ବଦା ରହିଥାଉ । ଆଲୋକ-କିରଣ ଦେଖି ତାଙ୍କ ପ୍ରିୟତମ କାଳେ ଫେରିଯିବେ, ସେଥିପାଇଁ ସେ ତାରାମାନଙ୍କୁ ମଧ୍ୟ ଲୁଚିଯିବା ପାଇଁ ଅନୁରୋଧ କରିଛନ୍ତି ।

ମେରେ ପ୍ରିୟତମ୍ କୋ ଭାତା ହୈ, ତମ୍ କେ ପର୍ଦେ ମେଁ ଆନା,
ଓ ନଭ କୀ ଦୀପାବଲି ତୁମ୍, ଷଣ୍ଭର୍ କୋ ଛୁପ୍ ଜାନା ।

ହୃଦୟ—ମନ୍ଦିରରେ ଅନନ୍ତ ପରମେଶ୍ୱରଙ୍କ ଆରାଧନା କରାଯାଇପାରିବ । ସେଥି ସକାଶେ ପୂଜା ବା ଅର୍ଚ୍ଚନାର କୌଣସି ଆବଶ୍ୟକତା ନାହିଁ । ତେଣୁ ସେ କହନ୍ତି—

"କ୍ୟା ପୂଜା କ୍ୟା ଅର୍ଚ୍ଚନରେ !"

ଉସ୍ ଅସୀମ୍ କା ସୁନ୍ଦର ମନ୍ଦିର୍ ମେରା ଲଘୁତମ୍ ଜୀବନ ରେ ।"

କବୟିତ୍ରୀଙ୍କ 'ନୀରଜା' ନାମକ କାବ୍ୟସଂଗ୍ରହରେ ରହସ୍ୟବାଦର ପରିପକ୍ୱ ରୂପ ପରିଲକ୍ଷିତ ହୁଏ । ତହିଁରେ ସେ ରହସ୍ୟ-ଭାବନା ସହିତ ଈଶ୍ୱରୋନ୍ମୁଖୀ ପ୍ରେମର ସୁନ୍ଦର ଓ ସଜୀବ ବର୍ଣ୍ଣନା କରିଅଛନ୍ତି । ଏହି ବର୍ଣ୍ଣନାରେ ଅଲୌକିକ 'ପ୍ରିୟ'ଙ୍କ ପ୍ରତି ଆହ୍ୱାନ, ମିଳନ, ବିଚ୍ଛେଦ, ଉତ୍ସର୍ଗ ଓ ସମର୍ପଣର ଯେଉଁ ଭାବନା ସନ୍ନିବିଷ୍ଟ ହୋଇଅଛି, ତାହା ଭୌତିକ ନ ହେଲେ ମଧ୍ୟ ଭୌତିକ ଆଧାରରେ ପରିକଳ୍ପିତ ଏବଂ କବୀର ଓ ଜାୟସୀଙ୍କ ରହସ୍ୟବାଦର ଅନୁରୂପ । ମହାଦେବୀ ତାଙ୍କର ପ୍ରଥମ ରଚନା 'ନୀହାର'ରେ ଚିନ୍ତାବଳରେ ଅଦ୍ୱୈତବାଦକୁ ଆଶ୍ରୟ କରି ରହସ୍ୟବାଦ ଆଡ଼କୁ ଅଗ୍ରସର ହୋଇଥିଲେ । ମାତ୍ର 'ନୀରଜା'ରେ କେବଳ ଚିନ୍ତାଦ୍ୱାରା ଅଦ୍ୱୈତବାଦ ଭାବନାକୁ ପରିପୁଷ୍ଟ କରିବା ତାଙ୍କର କାର୍ଯ୍ୟ ହୋଇ ନାହିଁ । ଅନୁଭୂତି ମଧ୍ୟ ତାଙ୍କର ପ୍ରଧାନ ସମ୍ବଳ ହୋଇ ତାଙ୍କୁ ରହସ୍ୟୋନ୍ମୁଖୀ କରିଅଛି ।

'ନୀରଜା'ର କବିତାଗୁଡ଼ିକରେ ସେ ତାଙ୍କ ଅନ୍ତରରେ ପ୍ରିୟତମଙ୍କ ଅଧିଷ୍ଠାନ ଅନୁଭବ କରି ଆତ୍ମପ୍ରସାଦ ଲାଭ କରିଅଛନ୍ତି । ସାଧକ ଆତ୍ମସାକ୍ଷାତ୍କାରରେ ଯେପରି ଆନନ୍ଦଲାଭ କରେ, ମହାଦେବୀ ଠିକ୍ ସେହି ଆନନ୍ଦ ଲାଭ କରିଅଛନ୍ତି । ମହାଦେବୀଙ୍କ ରହସ୍ୟବାଦୀ କବିତାରେ ଆତ୍ମା ଓ ପରମାତ୍ମାଙ୍କ ମିଳନ ଅପେକ୍ଷା ଉଭୟଙ୍କ ବିରହ-ବର୍ଣ୍ଣନ ଅଧିକ ମାର୍ମିକ ଓ ଚିତ୍ତାକର୍ଷକ ।

ପ୍ରିୟତମଙ୍କ ସାନ୍ନିଧ୍ୟ ଲାଭ କଲେ ଆତ୍ମା ଅହଂକାରରେ ତୃପ୍ତି ଲଭେ ନାହିଁ । ବରଂ ସେ ବିମୋହିତ ହୋଇ ତହିଁରେ ତାଦାତ୍ମ୍ୟ ସୁଖ ଲାଭ କରେ । ସେତେବେଳେ ତାହାର ମନରେ ପ୍ରିୟତମଙ୍କ ପରି-ଚୟର ଆକାଂକ୍ଷା କିମ୍ବା ସଂସାରର ପରିଚୟର ଇଚ୍ଛା ରହେନାହିଁ । ସ୍ୱର୍ଗ ବା ଅପବର୍ଗର ସ୍ପୃହା ତାହାର ମଧ୍ୟ ନ ଥାଏ ।

"ତୁମ୍ ମୁଝମେଂ ପ୍ରିୟ ! ଫିର ପରିଚୟ କ୍ୟା !
ତାରକ ମେଂ ଛବି, ପ୍ରାଣୋଂମେଂ ସ୍ମୃତି,
ପଲକୋଂମେଂ ନୀରବ ପଦ୍‌କୀ ଗତି,
ଲଘୁ ଉର୍‌ମେଂ ପୁଲକୋଂ କୀ ସଂସୃତି,
ଭର୍ ଲାଈ ହୁଁ ତେରୀ ଚଞ୍ଚଲ
ଔର୍ କରୁଁ ଜଗମେଂ ସଞ୍ଚୟ କ୍ୟା !
ତୁମ୍ ମୁଝମେଂ ପ୍ରିୟ ! ଫିର ପରିଚୟ କ୍ୟା ?

ତାଦାତ୍ମ୍ୟର ସ୍ୱରୂପବର୍ଣ୍ଣନରେ ମହାଦେବୀଙ୍କ କାବ୍ୟଶୈଳୀ 'ନିରାଲା'ଙ୍କ 'ତୁମ୍ ତୁଙ୍ଗ ହିମାଲୟ ଶୃଙ୍ଗ ଯଦ୍ରୁଣ ମେଂ ଚଞ୍ଚଲ୍ ଗତି ସୁରସରିତା'ର ଶୈଳୀ ବିଷୟ ସ୍ମରଣ କରାଇଦିଏ ।

ବାସ୍ତବରେ ଆମର ମୋହ-ପାଶ ହେତୁ ମନରେ ପ୍ରିୟତମ ଓ ପ୍ରେୟସୀଙ୍କ ପୃଥକ୍ ଅସ୍ତିତ୍ୱର ଭ୍ରମ ଉପୁଜେ । ଏହା ତୁଟିି ପାରିଲେ ଉଭୟଙ୍କ ଏକତା ବିଷୟ ଆମେ ଜାଣି ପାରିବା ।

"ଚିତ୍ରିତ ତୂ, ମେଂ ହୁଁ ରେଖା କ୍ରମ୍ ;
ମଧୁର ରାଗ୍ ତୂ, ମେଂହୁଁ ସ୍ୱର ସଙ୍ଗମ୍,
ତୂ ଅସୀମ୍, ମେଂ ସୀମାକା ଭ୍ରମ୍,
କାୟା ଛାୟାମେଂ ରହସ୍ୟମୟ '
ପ୍ରେୟସୀ-ପ୍ରିୟତମ୍ କା ଅଭିନୟ କ୍ୟା ।

ସଂସାରର ସମସ୍ତ ପଦାର୍ଥର ଆବର୍ତ୍ତନ ଓ ପରିବର୍ତ୍ତନ-କାରୀ ଅସୀମ-ଶକ୍ତିଯୁକ୍ତ ପ୍ରିୟତମ ବିଶ୍ୱର ପ୍ରତ୍ୟେକ ଅଣୁ-ପରମାଣୁ ମଧ୍ୟରେ ପରିବ୍ୟାପ୍ତ ହୋଇଥିଲେ ସୁଦ୍ଧା ସେ ଆତ୍ମମାନଙ୍କୁ ଦୂରରେ ଥିଲା ପରି ଜଣା ପଡ଼ନ୍ତି ଏବଂ ବିରହୀ ଆତ୍ମା ଯୁଗ-ଯୁଗାନ୍ତର କରୁଣ ବିଳାପ କରି ବିରହ-ଜ୍ୱାଳାରେ ଜଳି ମରେ । 'ନୀରଜା' ଅନ୍ତର୍ଗତ 'ପଥ୍ ଦେଖ୍ ବିତା ଦୀ ରୈନ୍ ମେଂ ପ୍ରିୟ ପହଚାନୀ ନହୀଂ' ଗୀତରେ ପ୍ରାକୃତିକ

ଦୃଶ୍ୟରାଜିର ଅବତାରଣାପୂର୍ବକ ଉକ୍ତ ଭାବକୁ ଅତ୍ୟନ୍ତ ସରସ ଶୈଳୀରେ କବୟିତ୍ରୀ ଅଭିବ୍ୟକ୍ତ କରିଅଛନ୍ତି । ତାଙ୍କ ରହସ୍ୟାନୁଭୂତିକୁ ଲୌକିକ ରୂପ ଦେବାରେ ମହାଦେବୀ ଆଶାତୀତ ଭାବରେ କୃତକାର୍ଯ୍ୟ ହୋଇଅଛନ୍ତି । ତାଙ୍କ ରଚିତ 'ରଶ୍ମି' ଓ 'ନୀହାର'ରେ ଏତାଦୃଶ ଲୌକିକ ରୂପକର ପ୍ରାଚୁର୍ଯ୍ୟ ମିଳିଥାଏ । ମାତ୍ର 'ନୀରଜା'ରେ ଉକ୍ତ ରୂପକରାଜିର ଧାତ୍ରିମୟୀ ଛଟାର ପରାକାଷ୍ଠା ପ୍ରଦର୍ଶିତ । ତାହା ପାଠ କଲେ ଜଣାପଡ଼େ, ସତେ ଯେପରି ମହାଦେବୀ ହୃଦୟର ହର୍ଷାତିରେକରେ ଅଜ୍ଞାନ ହୋଇ ଏତାଦୃଶ କବିତା ଲେଖି ପକାନ୍ତି । ଜୀବନର ଯଥାର୍ଥ ଅନୁଭୂତି ଏ ସବୁ କବିତାରେ ପ୍ରଦର୍ଶିତ । କେଉଁଠି ହେଲେ କୃତ୍ରିମତା ବା ଅସ୍ପଷ୍ଟତାର ନାମମାତ୍ର ନାହିଁ । ମହାଦେବୀଙ୍କ ସ୍ୱାଭାବିକ ସରଳ ଭାବର ସ୍ନିଗ୍ଧ ଅଭିବ୍ୟଞ୍ଜନା ଦେଖନ୍ତୁ :—

"ବୀନ୍ ଭୀ ହୂଁ ମେଁ ତୁମ୍ହାରୀ ରାଗିନୀ ଭୀ ହୂଁ !
ନୟନ୍ ମେଁ ଜିସ୍‌କେ ଜଲଦ୍ ୱହ୍ ତୃଷିତ ଚାତକ ହୂଁ ।
ଶଲଭ୍ ଜିସ୍‌କେ ପ୍ରାଣମେଁ ୱହ୍ ନିଠୁର ଦୀପକ୍ ହୂଁ,
ଫୂଲ୍‌କୋ ଉର୍‌ମେଁ ଛିପାୟେ ବିକଲ୍ ବୁଲ୍‌ବୁଲ୍ ହୂଁ,
ଏକ୍ ହୋକର୍ ଦୂର ତନ୍ ସେ ଛାଁହ ୱହ ଚଲ୍‌ହୂଁ ।
ଦୂର୍ ତୁମ୍ ସେ ହୂଁ ଅଖଣ୍ଡ ସୁହାଗିନୀ ଭୀ ହୂଁ ।"

ଉପର୍ଯ୍ୟୁକ୍ତ କବିମାନେ 'ଛାୟାବାଦ' ଯୁଗର ପ୍ରମୁଖ କବି । ସେମାନଙ୍କ ବ୍ୟତୀତ ଶ୍ରୀ ମୋହନ ଲାଲ ମହତୋ, 'ବିୟୋଗୀ,' ଭଗବତୀ ଚରଣ ବର୍ମା, ରାମକୁମାର ବର୍ମା, ନରେନ୍ଦ୍ର ଶର୍ମା ଓ ରାମେଶ୍ୱର ଶୁକ୍ଳ 'ଅଞ୍ଚଳ' ଏହି ଶ୍ରେଣୀର ଉଲ୍ଲେଖନୀୟ କବି ।

—୦—

# ଓଡ଼ିଆ ସାହିତ୍ୟରେ ରହସ୍ୟବାଦର ଧାରା

## ପଠାଣି ପଟ୍ଟନାୟକ

'ମିଷ୍ଟିସିଜମ୍' ଏହି ଶବ୍ଦଟି ସାଧାରଣତଃ ରହସ୍ୟବାଦ, ମରମବାଦ ଅତୀନ୍ଦ୍ରିୟବାଦ କିମ୍ବା ବ୍ରହ୍ମବାଦ ଅର୍ଥରେ ବୁଝାଯାଇଥାଏ । କେହି କେହି ଏହାକୁ ଗୁପ୍ତବାଦ ଅର୍ଥରେ ମଧ୍ୟ ନାମିତ କରି ଥାଆନ୍ତି । ଯେଉଁ ଭାବନା ସହଜ ଓ ସ୍ୱାଭାବିକ ଭାବରେ ପ୍ରକାଶିତ ନ ହୋଇ ରହସ୍ୟର ସଞ୍ଚାର କରେ ଅଥବା କୌଣସି ନୂତନ ସତ୍ୟର ଇଙ୍ଗିତ ପ୍ରଦାନ କରେ, ତାହା ରହସ୍ୟବାଦ ।

ଭାରତୀୟ ସାହିତ୍ୟରେ ଏହି ରହସ୍ୟବାଦର ଧାରଣା ଅତ୍ୟନ୍ତ ପ୍ରାଚୀନ । ଆତ୍ମାର ପରମାତ୍ମାଙ୍କ ସହିତ ଆକର୍ଷଣ ଅଥବା ଆତ୍ମା ଓ ପରମାତ୍ମାଙ୍କ ମିଳନ ଜନିତ ଭାବନାକୁ ରହସ୍ୟାବୃତ କରି ପ୍ରକାଶ କରାଯାଉଥିଲା । ଏହି ପ୍ରକାର ଭାବନାକୁ ଆଧ୍ୟାତ୍ମିକବାଦ ମଧ୍ୟ କୁହାଯାଇପାରେ । ଭଗବାନ ଅଥବା ଜଗତ ସଂପର୍କରେ ଅତ୍ୟନ୍ତ କୌତୁହଳ ଜନକ ଧାରଣାକୁ ମିଷ୍ଟିସିଜମ୍ ଅର୍ଥରେ ଗ୍ରହଣ କରାଯାଏ । ସେଥିପାଇଁ ମିଷ୍ଟିକ୍‌ର ସଂଜ୍ଞା ହେଉଛି—One who believes in spiritual apprehension of Truths beyond the understanding.

ଭାରତୀୟ ପ୍ରାଚୀନ କବିମାନେ ଯେତେବେଳେ କୌଣସି ଅଜ୍ଞାତ ଅନନ୍ତ ଶକ୍ତିର ସନ୍ଧାନ ପାଇଁ ବ୍ୟାକୁଳ ହୋଇଛନ୍ତି, ସେତେବେଳେ ରହସ୍ୟପୂର୍ଣ୍ଣ ଅଭିବ୍ୟକ୍ତି ମାଧ୍ୟମରେ ସାହିତ୍ୟ ରଚିତ ହୋଇଅଛି । ସାଧାରଣ ପାଠକ ନିକଟରେ ଏହି ଭାବନାର ସ୍ୱାଦ ଉପଲବ୍‌ଧି ସହଜସାଧ୍ୟ ନୁହେଁ । ଗୁରୁ ପରଂପରା ଜରିଆରେ ଏହି ରହସ୍ୟପୂର୍ଣ୍ଣ ଭାବନାକୁ ବୁଝିବାକୁ ହୁଏ । ବ୍ରହ୍ମପାଇଁ ଆତ୍ମାର ଅନନ୍ତ ପ୍ରେମ ଓ ବ୍ୟାକୁଳତା ଏହି କବିତାର ପ୍ରାଣବସ୍ତୁ । ସେମାନେ ଉପନିଷଦର ଭାଷାରେ ଜଗତଙ୍କୁ ବ୍ରହ୍ମମୟ ମନେ କରନ୍ତି । "ଇଶା ବାସ୍ୟମିଦଂ ସର୍ବମ୍ ।" ଏକମାତ୍ର ବ୍ରହ୍ମ ହେଉଛି ସତ୍ୟ ; ସମସ୍ତ ଜଗତ ଅଳୀକ ଏବଂ ମିଥ୍ୟା । ଅଦ୍ୱୈତବାଦୀ ଆତ୍ମା ଓ ବ୍ରହ୍ମକୁ ଅଭିନ୍ନ ଦେଖିଲା ପରି ପ୍ରାଚୀନ ରହସ୍ୟବାଦୀ କବିଗଣ ଭକ୍ତ ଓ ଭଗବାନ ମଧ୍ୟରେ ଅଭିନ୍ନ ସଂପର୍କ ପ୍ରତିଷ୍ଠା କରିଥିଲେ । ବୌଦ୍ଧଗାନ ଓ ଦୋହା, ଉପନିଷଦ ଓ ସହଜିଆ ସାହିତ୍ୟରେ ଏହିଭଳି ଆଧ୍ୟାତ୍ମିକ ବିଚାର-ଧାରାର ତାତ୍ତ୍ୱିକ ପରିଚୟ ମିଳିଥାଏ । ଓଡ଼ିଆ ସାହିତ୍ୟରେ ବୌଦ୍ଧଗାନ ଓ ଦୋହାରୁ ଆରମ୍ଭ ହୋଇ ପଞ୍ଚସଖା ଯୁଗର ଚିନ୍ତ-

ବ୍ରହ୍ମାଣ୍ଡ ତତ୍ତ୍ୱ ଅଥବା ବୈଷ୍ଣବ କାବ୍ୟ ସାହିତ୍ୟରେ ପ୍ରକୃତି ଓ ପୁରୁଷର ମିଳନ କଳ୍ପନାରେ ଏହି ରହସ୍ୟମୟୀ ଭାବନା ପ୍ରତିଷ୍ଠା ଲାଭ କରେ । ଏହାକୁ ବ୍ରହ୍ମବାଦ ଅଥବା ପରମବାଦ ଭାବରେ ଗ୍ରହଣ କରାଯାଇ ପାରେ । ପ୍ରାଚୀନ କବିମାନଙ୍କର ରହସ୍ୟବାଦ ଅନେକ ସମୟରେ ଦୁର୍ବୋଧ ଅଥବା ଦାର୍ଶନିକ ତତ୍ତ୍ୱ ଘଟିତ । ସେଥିପାଇଁ ବେଳେବେଳେ ଦୁର୍ବୋଧ ରଚନାକୁ ରହସ୍ୟବାଦର ରଚନା ବୋଲି ମତବ୍ୟକ୍ତ କରାଯାଇଥାଏ । କିନ୍ତୁ ମିଷ୍ଟିସିଜିମ୍‌ର ଏହା ପ୍ରକୃତ ରୂପରେଖ ପ୍ରଦାନ କରେ ନାହିଁ ।

ରହସ୍ୟବାଦୀ କବି ଅତୀନ୍ଦ୍ରିୟ ଜଗତରେ ବିଚରଣ କରି ଆଧ୍ୟାତ୍ମିକତାର ପ୍ରଚାର କରିପାରେ ; ମାତ୍ର ଆଧ୍ୟାତ୍ମିକତା ଆଧୁନିକ ମରମୀ କବିତାର ପ୍ରାଣଧର୍ମ ନୁହେଁ । ଆଧୁନିକ ମରମୀ କବି କାବ୍ୟ କବିତାର ମାଧ୍ୟମରେ କେବଳ ବୁଦ୍ଧିର କସରତ ଅଥବା ଜ୍ଞାନର ଅହଂକାର କରେ ନାହିଁ । ଅପୂର୍ବ କଳ୍ପନା ବିଳାସିତା ଓ ଭାବୁକତାର ଉଜ୍ଜ୍ୱଳ ପ୍ରକାଶ ଦ୍ୱାରା ସେ ନିଜର ରଚନାକୁ ଅଧିକ ମନୋଜ୍ଞ କରିଥାଏ । ଆଧୁନିକ ମରମୀ ଭାବନାରେ ଭାବବିହ୍ୱଳତା, କଳ୍ପନା ବିଳାସିତା ଏବଂ ଦାର୍ଶନିକତାର ସାର୍ଥକ ସମନ୍ୱୟ ଦେଖାଯାଏ । ସାଧାରଣ ଭାବୁକ ବା କବି କେବଳ ବାହ୍ୟ ବସ୍ତୁରେ ଚିତ୍ତ ନିବେଶ କଲାବେଳେ ମରମୀ କବି ତାହାର ଅନ୍ତର୍ନିହିତ ସୌନ୍ଦର୍ଯ୍ୟ ଉପଲବ୍ଧି କରେ । ମରମୀ ଭାବନା ସର୍ବଦା ଇନ୍ଦ୍ରିୟାତୀତ ଆବେଗସମ୍ଭୂତ । ସତ୍ୟର ସନ୍ଧାନ ପାଇଁ ମିଷ୍ଟିକ କବି ଏହି ଆବେଗମୟୀ ଭାବନାର ଆହ୍ୱାନ ଗ୍ରହଣ କରେ ।

ମିଷ୍ଟିକ୍ କବିମାନେ ସାଧାରଣତଃ ବ୍ରହ୍ମବାଦୀ । ବ୍ରହ୍ମବାଦୀଙ୍କର ଭାଷା ହେଉଛି ପ୍ରତୀକବାଦ । ସେମାନେ ବାହାରର ପ୍ରକୃତି ସଂସାରକୁ ଦେଖି ମୁଗ୍ଧହୃଅନ୍ତି ସତ, ତାହାର ବିଚିତ୍ର ରୂପଶୋଭାରେ

କେବଳ ସନ୍ତୁଷ୍ଟ ହୁଅନ୍ତି ନାହିଁ । ସେମାନଙ୍କ ମତରେ ଏହି ପ୍ରକୃତି ସଂସାର ମଧ୍ୟରେ ସମଗ୍ରସୃଷ୍ଟିର ସତ୍ୟ ନିହିତ ରହିଅଛି । ତେଣୁ ମିଷ୍ଟିକ୍ କବିତାରେ ଅନନ୍ତ ଓ ଅସୀମ ଭାବରାଶିର ସନ୍ଧାନ ମିଳେ ; କ୍ଷୁଦ୍ର ମଧ୍ୟରେ ବିରାଟର ଅନୁଭବ ଆସେ । ରୂପ ମଧ୍ୟରେ ରୂପାତୀତର ସନ୍ଧାନ ଦେବା ମିଷ୍ଟିକକବିର ଧର୍ମ ।

ମିଷ୍ଟିକ୍ ଚିନ୍ତାଧାରାର ଏହି ବିଶ୍ଳେଷଣ ସ୍ମରଣ କରି ଓଡ଼ିଆ ସାହିତ୍ୟରେ ପ୍ରାଚୀନ ବ୍ରହ୍ମବାଣୀ ଏବଂ ଆଧୁନିକ ମରମୀ କବିତାର ଧାରା ଆଲୋଚନା କରିବାକୁ ହେବ । ଏହା ଦଶମ ଶତାବ୍ଦୀର ବୌଦ୍ଧଗାନ ଓ ଦୋହାଠାରୁ ଷୋଡ଼ଶ ଶତାବ୍ଦୀର ପଞ୍ଚସଖା ସାହିତ୍ୟ ବାଟଦେଇ ଆଧୁନିକ ଯୁଗର ମଧୁସୂଦନ, କୁନ୍ତଳାକୁମାରୀ, ଲକ୍ଷ୍ମୀକାନ୍ତ ବୈକୁଣ୍ଠ ନାଥଙ୍କ ପର୍ଯ୍ୟନ୍ତ ନାନାଭାବରେ ପ୍ରସାରିତ ହୋଇ ଆସିଛି ।

କବିତା ରସଧର୍ମୀ ହେଲେହେଁ ଯେଉଁ ରସାପ୍ଳୁତ ଭାବନାରେ ମରମୀ ଭାବନାର ପ୍ରଚୁର ହୋଇଥାଏ, ସେହି ଶ୍ରେଣୀର କବିତା ସତତ ଚିରନ୍ତନଧର୍ମୀ । ସାହିତ୍ୟ ସଂସାରରେ କବି ଚିରକାଳ ସେହି ଭୂମା ଓ ରୂପାତୀତ ସୌନ୍ଦର୍ଯ୍ୟର ଅନ୍ୱେଷଣ କରି ଆସିଛି । ଆସ୍କର ଓ୍ୱାଇଲ୍ଡ଼ଙ୍କ ମତରେ "The mystical in art, the mystical innature···this is what I am looking for." କଳା, ଜୀବନ ତଥା ବିଶ୍ୱ ପ୍ରକୃତିରେ ଏକ ଅନ୍ତର୍ନିହିତ ଭାବର ସନ୍ଧାନ କରିଥାଏ । ସୀମାମଧ୍ୟରେ ଅସୀମର, ରୂପ ମଧ୍ୟରେ ଅରୂପର ଆକର୍ଷଣ ହିଁ କବି ଓ କଳାକାରର ସର୍ବକାଳର ସାଧନା । ତେଣୁ ଇଂରେଜ କବି ସେଲି ତାଙ୍କର ( Intellectual Beauty ) ରେ ଯାହା କହିଥିଲେ, ତାହା ଏହିପରି ।—

"The awful shadow of some unseen power,
Ploats, though unseen, among us visiting

This various world with as constant wing
As summer winds that creep from flower to flower"

କବିଗୁରୁ ରବୀନ୍ଦ୍ରନାଥ ତାଙ୍କର ଜୀବନସ୍ମୃତିରେ ସେହି କଥାର ପ୍ରତିଧ୍ୱନି କରିଛନ୍ତି ମାତ୍ର । ତାଙ୍କରି ଭାଷାରେ —"ଆମାର ତୋ ମନେ ହୟ,ଆମାର କାବ୍ୟ ରଚନାର ଏଇ ଏକଟିମାତ୍ର ପାଲା—ସେ ପାଲାର ନାମ ଦେଓୟା ଯାଇତେ ପାରେ ସୀମାର ମଧ୍ୟେଇ ଅସୀମେର ସହିତ ମିଲନ ସାଧନେର ପାଲା ।" ତେବେ ରହସ୍ୟବାଦ କଅଣ ! ସାହିତ୍ୟ ଯେତେବେଳେ ଜୀବ, ଜୀବନ ଏବଂ ଜଗତର ରହସ୍ୟ ସମ୍ପର୍କରେ ଉତ୍କଣ୍ଠା ପ୍ରକାଶ କରି ନିଜର ଅନୁସନ୍ଧିତ୍ସା ପ୍ରବୃତ୍ତିର ଚରିତାର୍ଥତା ପାଇଁ ଚେଷ୍ଟା କରେ, ସେତେବେଳେ ପ୍ରକୃତ ରହସ୍ୟବାଦର ଅଭ୍ୟୁଦୟ ହୁଏ । ହିନ୍ଦୀ ସାହିତ୍ୟର ସମାଲୋଚକ ଶୁକ୍ଳଜୀଙ୍କ ମତରେ ରହସ୍ୟବାଦ ହେଉଛି—"ଚିନ୍ତନ କେ କ୍ଷେତ୍ରମେ ଯୋ ଅଦ୍ୱୈତବାଦ, ଭାବ କ୍ଷେତ୍ରମେଂ ୱହୀ ରହସ୍ୟବାଦ ହୈ ।" ଚିନ୍ତା ରାଜ୍ୟରେ ଯାହାକୁ ଆମେ ଅଦ୍ୱୈତବାଦ ଅର୍ଥରେ ଗ୍ରହଣ କରୁ, ଭାବନା କ୍ଷେତ୍ରରେ ତାହା ରହସ୍ୟବାଦରୂପେ ପ୍ରକଟିତ ହୁଏ । ଏଥିରେ ମୋଟାମୋଟି ନିମ୍ନ କେତେଗୋଟି ମୌଳିକ ଭାବନା ଦୃଷ୍ଟିଗୋଚର ହୁଏ ।

(୧) ରହସ୍ୟବାଦୀ କବିତାରେ ବ୍ରହ୍ମ ଓ ଜୀବର ସମ୍ବନ୍ଧ ନିରୂପିତ ହୋଇଥାଏ ।

(୨) ପ୍ରାକୃତିକ ସଂସାରର ବାହାରେ ଏକ ଅରୂପ ମହାନ୍ ସତ୍ତାର ଉପଲବ୍ଧି ପାଇଁ ଅପାର ପ୍ରେରଣା ମିଳିଥାଏ ।

(୩) ଏହି ଶ୍ରେଣୀର କବିତାରେ ଏକ ଅଦୃଶ୍ୟ, ପରୋକ୍ଷ ସତ୍ତା ପ୍ରତି ଆତ୍ମାର ବନ୍ଦନା ପ୍ରକାଶ ପାଏ ।

ସାହିତ୍ୟ କ୍ଷେତ୍ରରେ ଏହି ଆତ୍ମା ଓ ପରମାତ୍ମାର ବର୍ଣ୍ଣନା ରୀତିଯୁଗର ସାହିତ୍ୟରେ ବିରଳ କହିଲେ ଚଳେ । ମାତ୍ର ଭକ୍ତିଯୁଗର ସାହିତ୍ୟରେ ଆଧ୍ୟାତ୍ମିକତା ପ୍ରାଧାନ୍ୟ ଲାଭ କରିଥିବାରୁ ଆତ୍ମା ପରମାତ୍ମାର ସଂପର୍କ ଜନିତ ସିଦ୍ଧାନ୍ତ ରହସ୍ୟର ସଞ୍ଚାର କରେ ଏବଂ ସେହି ଶ୍ରେଣୀର କବିତାରେ ଆମେ ରହସ୍ୟବାଦ ଅନୁସନ୍ଧାନ କରୁ । ଏହି ଭିତ୍ତିରେ ବୌଦ୍ଧଗାନ ଓ ଦୋହା-କାଳର ରଚନାବଳୀ କିମ୍ବା ପଞ୍ଚସଖା ଯୁଗର ତନ୍ତ୍ର ପ୍ରଭାବିତ ଶୂନ୍ୟବାଦୀ ସାହିତ୍ୟ ଆମ୍ଭମାନଙ୍କର ବିଶେଷ ପ୍ରଣିଧାନ ଯୋଗ୍ୟ । କାରଣ ଏହି ଉଭୟ କାଳର ସାହିତ୍ୟରେ ଅଜ୍ଞାତ, ଅବ୍ୟକ୍ତ, ଏବଂ ନିଗୂଢ଼ ଶକ୍ତି ବିଷୟକ ଜିଜ୍ଞାସାର ସମାଧାନ ପାଇଁ ଉଦ୍ୟମ କରାଯାଇଅଛି ।

ଉଦାହରଣ ଛଳରେ ଏଠାରେ ଓଡ଼ିଆ ସାହିତ୍ୟର ପ୍ରାଥମିକ ସ୍ତରର ରଚନାରୂପେ ଦାବୀ କରାଯାଉଥିବା ବୌଦ୍ଧଗାନ ଓ ଦୋହାର ଏକ ଗୀତ ଆଲୋଚନା କରାଯାଇପାରେ । ବୌଦ୍ଧ ସିଦ୍ଧାଚାର୍ଯ୍ୟଗଣ ଜୀବ ଓ ପରମର ସଂପର୍କରେ ତାତ୍ତ୍ୱିକ ସାଧନାର ସତ୍ୟକୁ ଅପ୍ରକାଶ୍ୟ କରିବାପାଇଁ ରୂପକଧର୍ମୀ ରଚନାର ଆଶ୍ରୟ ଗ୍ରହଣ କରିଅଛନ୍ତି । ସିଦ୍ଧାଚାର୍ଯ୍ୟ କାହ୍ନୁପାଦଙ୍କର ଏକ କବିତା ଏଠାରେ ଉଲ୍ଲେଖ ଯୋଗ୍ୟ ।

ଯଥା—

"ନଗର ବାହିରରେ ଡୋମ୍ବି ତୋହରି କୁଡ଼ିଆ,
ଛୋଇ ଛୋଇ ଜାଇ ସେ ବାମ୍ହଣ ନାଡ଼ିଆ ।
ଆଲୋ ଡୋମ୍ବି ତୋଏ ସମ କରିବ ମ ସାଙ୍ଗ,
ନିଘିଣ କାନ୍ହ କପାଳୀ ଜୋଇ ଲାଙ୍ଗ ।
ଏକ ସେ ପଦମା ଚୌଷଠି ପାଖୁଡ଼ି,
ତହିଁ ଚଡ଼ି ନାଚେ ଜୋଗୀ ବାପୁଡ଼ୀ ।

ହାଲେ ଡୋମ୍ବି ତୋ ପୁଛମି ସଦ୍‌ଭାବେ,
ଆଇସସି ଯାଅସି ଡୋମ୍ବି କାହାର ନାବେ ।"

ଏହି ଗୀତଟିର ଆକ୍ଷରିକ ଅର୍ଥ ହେଲା—ଡମଣିର ଘର ନଗର ବାହାରେ ଅବସ୍ଥିତ । ସେଠାରେ ସେ କୁଡ଼ିଆଟିଏ କରି ଅବସ୍ଥାନ କରେ । ସେ ବ୍ରାହ୍ମଣର ପାଖୁଆ ଛୁଇଁ ଛୁଇଁ ଯାଉଚି । ଡମଣି ସହିତ ମିଳିତ ହେବାପାଇଁ ଯୋଗୀ କାହ୍ନୁପାଦ ଅତ୍ୟନ୍ତ ବ୍ୟାକୁଳ । ସେ କହୁଛନ୍ତି—ସେତ ଯୋଗୀ ଲୋକ, ପୁଣି ଲଙ୍ଗଳା । ତାଙ୍କର ଭଲ ମନ୍ଦ ଜ୍ଞାନ ନାହିଁ । ତେଣୁ ଡମଣି ସଙ୍ଗେ ମିଳିଲେ ତାଙ୍କର ଲଜ୍ଜା ବା ଘୃଣା ନାହିଁ । ଗୋଟିଏ ପଦ୍ମ, ଯହିଁରେ ଚଉଷଠି ପାଖୁଡ଼ା ଅଛି, ଯୋଗୀ କାହ୍ନୁପାଦ ସେଠାରେ ନାଚୁଛନ୍ତି । ଯୋଗୀ କାହ୍ନୁପାଦ ପଚାରୁଛନ୍ତି—'ଆଲୋ ଡମଣି, ତୋତେ ବନ୍ଧୁ ଭାବରେ ପଚାରୁଛି, ତୁ କେଉଁବାଟେ ଆସୁଛୁ ଓ ଯାଉଛୁ । ମୋତେ ଭଲ କରି କହ ।

ବୌଦ୍ଧ ଜଗତରେ କାହ୍ନୁପାଦ ଜଣେ ପ୍ରସିଦ୍ଧ ସିଦ୍ଧ ଓ ସାଧକ । ସାଧାରଣ ପାଠକ ଏହି କବିତା ପାଠ କରି ତାଙ୍କର କାମୁକତାର ପରିଚୟ ଲାଭ କରିବ । ମାତ୍ର ଏଭଳି ଲୌକିକ ଅର୍ଥର ଅନ୍ତରାଳରେ ଅତି ଗୂଢ଼ ଆଧ୍ୟାତ୍ମିକ ସତ୍ୟର ଯେ ପରିବେଷଣ କରାଯାଇଛି, ତାହା ଗୁରୁ ପରଂପରାରେ ହିଁ ବୁଝାଯାଇଥାଏ ।

ଏହି ଗୀତର ଆଧ୍ୟାତ୍ମିକ ମର୍ମ ହେଲା—ଏଠାରେ ଦେହ ହେଲା ନଗର ରୂପକ । ତା'ର ବାହାରେ କୁଡ଼ିଆ । ଅର୍ଥାତ ସୁଷମ୍ନା ନାଡ଼ିରେ ଆମେ ପ୍ରଶ୍ୱାସ ନେଉନାହୁଁ । ନେଇଥାଉ ଇଳା ପିଙ୍ଗଳା ନାଡ଼ିରେ । ସୁଷମ୍ନାର ମଧ୍ୟବର୍ତ୍ତୀ ନାଡ଼ି ବ୍ରହ୍ମନାଡ଼ି ନାମରେ ପରିଚିତ । ଯୋଗ ସାଧନା କରି ସହସ୍ରଦଳ କମଳ ନିକଟରେ ପହଞ୍ଚିଲେ ସାଧକର ବୈଷୟିକ ଜ୍ଞାନ ଲୋପ ପାଏ, ବ୍ରହ୍ମନାଡ଼ି ସ୍ପର୍ଶରେ । ଇଳା ପିଙ୍ଗଳାର ଗତିପଥ ଆମକୁ ଜଣାଥିଲେ ହେଁ ସୁଷମ୍ନା ନାଡ଼ିର ଗତିପଥ ଆମକୁ ଜଣା ନାହିଁ ।

ଓଡ଼ିଆ ସାହିତ୍ୟରେ ଭକ୍ତିଯୁଗର ରଚନାବଳୀକୁ ସାହିତ୍ୟ ଇତିହାସର ସୁବର୍ଣ୍ଣଯୁଗ ବୋଲି ନାମିତ କରାଯାଇପାରେ । ଏହି ଯୁଗରେ ଜଗନ୍ନାଥ, ଯଶୋବନ୍ତ, ଅଚ୍ୟୁତାନନ୍ଦ, ବଳରାମ, ପ୍ରଭୃତି ଯେଉଁ ଆଧ୍ୟାତ୍ମିକ ତତ୍ତ୍ୱର ପରିବେଷଣ ସାହିତ୍ୟ ମାଧ୍ୟମରେ କରି ଯାଇଅଛନ୍ତି, ତାହା ଶୂନ୍ୟବାଦ ନାମରେ ପରିଚିତ । ଏହି ଶୂନ୍ୟବାଦ ସଂପର୍କରେ ଶ୍ରୀଯୁକ୍ତ ମନୋରଞ୍ଜନ ଗୁପ୍ତ ଆଲୋଚନା କରି ଲେଖିଛନ୍ତି—"ନାଗାର୍ଜୁନେର ମତେ ଜଗତେର ଶୁଧୁ ଘାଟନିକ ଅସ୍ତିତ୍ୱ ଆଛେ । ଏଖାନେ କିଛୁଇ କ୍ଷଣିକ ଓ ନୟ, ଶାଶ୍ୱତ ଓ ନୟ, ଏକ ଓ ନୟ, ପୃଥକ ଓ ନୟ, ଉତ୍ପତ୍ତିଓ ନାଇ, ବିନାଶ ଓ ନାଇ, ଆସେ ଓ ନା, ଯାୟ ଓ ନା—ଶୁଧୁ ଅଭ୍ୟାସ, ଶୁଧୁ ଉତ୍ପଦ୍ୟମାନ । ଜଗତ ସମ୍ବନ୍ଧ ଓ ଗୁଣେର ଏକ ଆଦର୍ଶ ପ୍ରଥା । ଆମରା ସମ୍ବନ୍ଧେ ବିଶ୍ୱାସ କରି, କିନ୍ତୁ ତାର ବୋଧଗମ୍ୟ ବ୍ୟାଖ୍ୟା ଦିତେ ପାରିନା, ନାସ୍ତି ନାଇ, ନରନାଇ, ଜୀବନ ନାଇ, ସତ୍ତ୍ୱ ନାଇ, ଆତ୍ମା-ନାଇ, ସବଇ ଅବାସ୍ତବ, ସବଇ ଅନସ୍ତିତ୍ୱ, ସ୍ୱପ୍ନେର ମତୋ ଆଲେୟାର ମତୋ, ଜଲେ ସୂର୍ଯ୍ୟେର ପ୍ରତିବିମ୍ବେର ମତୋ ବିଶ୍ୱଜଗତ ହେତୁର ଫଲ ଛଡ଼ା କିଛୁ ନାଇ—ସବ ଶୂନ୍ୟତା । ବୁଦ୍ଧ ବଲେଛେନ ତା ଶୂନ୍ୟ ନୟ, ଅଶୂନ୍ୟ ନୟ, ଶୂନ୍ୟ ଅଶୂନ୍ୟ ଉଭୟ ନୟ, ଶୂନ୍ୟ ଅଶୂନ୍ୟଥେକେ ପୃଥକ୍ ନୟ । ସେଇ ଚରମ ସତ୍ୟକେ ଚିହ୍ନିତ କରିବାର ଜନ୍ୟଇ ଶୂନ୍ୟ ବଲାହୟ ।

ଶୂନ୍ୟମ୍ ଇତି ବକ୍ତବ୍ୟମ ଅଶୂନ୍ୟମ୍ ଇତି
ବାଭବେତ୍
ଉଭୟମ୍ ନୋଭୟମ୍ ଚେତି ପ୍ରଜ୍ଞା
ପ୍ରତ୍ୟାରଥମ୍ ତୁ କଥ୍ୟତେ ।

( ମାଧ୍ୟମିକ ସୂତ୍ର )

ଶୂନ୍ୟତାଦ୍ୱାରା ସବଇ ସମ୍ଭବ ହୁଏ, ଶୂନ୍ୟତା ବ୍ୟତୀତ କିଛୁଇ ସମ୍ଭବ ହୁଏ ନା । ଅସ୍ତି, ନାସ୍ତି, ଉଭୟ ଅନୁଭୟ ଏଇ ଚାରଟି ଶକ୍ତି ଥେକେ ଶୂନ୍ୟତା ମୁକ୍ତ । ଜଗତେର ଏକମାତ୍ର ତତ୍ତ୍ୱ ଶୂନ୍ୟତା, ଶୂନ୍ୟପର ଅସ୍ତିତ୍ୱ ବା ଅନସ୍ତିତ୍ୱ ନାଇ, ତା ଦେଖାଓ ଯାୟନା, ଉପଲବ୍‌ଧି କରାଓ ଯାୟନା, ଆମରା ବର୍ତ୍ତମାନେ ଯେ ଯେ ବିଷୟ ଦେଖି, ତା ଅତୀତେଓ ଶୂନ୍ୟ, ଭବିଷ୍ୟତେଓ ଶୂନ୍ୟ; କାରଣ ତା'ର ସାରମର୍ମ ଶୂନ୍ୟତା, ଅବିଦ୍ୟାର ଜନ୍ୟ ଯେ ଜିନିଷେର ଅସ୍ତିତ୍ୱ ନାଇ, ତାର ଅସ୍ତିତ୍ୱ ଆଛେ ବଲେ ମନେ ହୟ । ଅବିଦ୍ୟା ଦୂର ହୟେ ଜ୍ଞାନ ହଲେଇ ଦେଖାଯାୟ କୋନଓ ଜିନିଷେର ଅସ୍ତିତ୍ୱ ନାଇ । ଅଭାବ ନୟ, ଅର୍ଜିତ ନୟ, ଯା ସବିରାମ ନୟ, ଯା ଅବର୍ଣ୍ଣନୀୟ ଓ ଅସୃଷ୍ଟ, ତାଇ ନିର୍ବାଣ । ଦୃଶ୍ୟମାନ ଜଗତେର ଯେ ଜ୍ଞାନ ତାକେ ସମ୍ବୃତି ସତ୍ୟବଲା ହୟ — ତା ଆପେକ୍ଷିକ । ଶୂନ୍ୟତାର ଯେ ଜ୍ଞାନ ତା ହଚ୍ଛେ ପରମାର୍ଥ ବା ପରମ ଜ୍ଞାନ ।

ମାଧ୍ୟମିକ କାରିକାତେ ବଲା ହୟେଛେ :—

ଦ୍ୱେସତ୍ୟେ ସମୁପାଶ୍ରିତ୍ୟ ବୁଦ୍ଧାନାଂ ଧର୍ମ ଦେଶନାଂ
ଲୋକ ସମ୍ବୃତି ସତ୍ୟଞ୍ଚ ସତ୍ୟଞ୍ଚ ପରମାର୍ଥତଃ ।

ବୁଦ୍ଧେର ଧର୍ମେ ଦୁଟି ସତ୍ୟ ଆଛେ । ଏକଟି ଲୌକିକ ବୁଦ୍ଧିରୂପ ସମ୍ବୃତି, ଆର ଏକଟି ଶୂନ୍ୟ ରୂପ ପରମ ସତ୍ୟ ।" (୧)

ଏହି ଶୂନ୍ୟତା ରୂପକ ପରମଜ୍ଞାନକୁ ଲଭ କରିବାପାଇଁ ପଞ୍ଚସଖା ଯୁଗର ସାଧକଗଣ ପ୍ରାଣାୟାମ ସାଧନାଦ୍ୱାରା ସୁପ୍ତ କୁଣ୍ଡଳିନୀ ଶକ୍ତିକୁ ଜାଗ୍ରତ କରିଛନ୍ତି । ଏହି ମାର୍ଗରେ ସାଧନା କରି ସୁଷୁମ୍ନା ନାଡ଼ୀରେ

---

୧ । ଦର୍ଶନେର ଇତିବୃତ୍ତ—ପ୍ରଥମ ପର୍ବ ୧୯୫୪—ପୃ୨୪୮—୪୯

ଷଡ଼ଚକ୍ର ଭେଦକରି ବଙ୍କନାଳ ବାଟେ ବ୍ରହ୍ମରନ୍ଧ୍ର ବା ସହସ୍ରକମଳରେ ପରମବ୍ରହ୍ମଙ୍କର ସାକ୍ଷାତ କରିବାକୁ ହୁଏ । ଏ ସାଧନାର ଧାରା 'ବୌଦ୍ଧଗାନ ଓ ଦୋହା' ଅମଳରୁ ଚାଲି ଆସିଥିବା ଜଣାଯାଏ ।

ଶୂନ୍ୟ ପୁରୁଷ ସମ୍ପର୍କରେ ଆଲୋଚନା କରି ଗବେଷକ ଚିତ୍ତରଞ୍ଜନ ଦାସ ଲେଖିଅଛନ୍ତି ଯେ ଭାରତୀୟ କଳ୍ପନାରେ ଭାବ ଚିର ଦିନ ବିଗ୍ରହରେ ପରିଣତ ହୋଇଛି । ତେଣୁ ପଞ୍ଚସଖା ଯେଉଁଠାରେ ଶୂନ୍ୟପୁରୁଷ ବା ନିରାକାର ପୁରୁଷ ବୋଲି କହି ଅଛନ୍ତି, ସେଠି କେବଳ ପୌତ୍ତଳିକତା ବା କେବଳ ସୂକ୍ଷ୍ମ କଳ୍ପନା କଲେ ଭୁଲ ହେବ ।

ଶୂନ୍ୟ ସତ୍ତ୍ୱର ଶୁଦ୍ଧ ଭାବକୁ ବିଗ୍ରହ ଦେବାକୁ ଯାଇ ଏହି ପୁରୁଷ ବା ଦେବ କଳ୍ପନାସମ୍ଭୂତ ହୋଇଛି । ବୌଦ୍ଧତନ୍ତ୍ରର ଦେବାଦେବୀ ସମସ୍ତେ ଶୂନ୍ୟ ବାଚକ; ଅବଲୋକିତେଶ୍ୱର ଓ ପ୍ରଜ୍ଞାଦେବୀ ଚେତନା ଓ ଶକ୍ତି ଭାବର ବିଗ୍ରହ ମୂର୍ତ୍ତି । ବୈଷ୍ଣବ ସାହିତ୍ୟରେ ମଧ୍ୟ ଏହି ଭାବରେ ବିଗ୍ରହବାଦକୁ ସବୁଠାରେ ସ୍ୱୀକାର କରାଯାଇଛି । ଅଚ୍ୟୁତାନନ୍ଦ ମଧ୍ୟ ଏହି ସର୍ବକାଳବ୍ୟାପି ଶୂନ୍ୟପୁରୁଷକୁ ନାନା ଗୁଣରେ ଭୂଷିତ କରି ଲେଖିଛନ୍ତି:—

ଭଲ ପଚାରିଲୁ ଗୁପତ ସନ୍ଧି । ଶୂନ୍ୟ ପୁରୁଷ ଶୂନ୍ୟପରେ ବନ୍ଧି ।
ଶୂନ୍ୟ ପୁରୁଷ ଉଦାସରେ ରହେ ।

ଶୂନ୍ୟ ପୁରୁଷ ସବୁ ମାୟା ଭ୍ୟାପେ ।
ଶୂନ୍ୟ ପୁରୁଷ ଦୟାଳୁ ଅଟଇ ।

ଶୂନ୍ୟ ପୁରୁଷ ସର୍ବଘଟେ ରହି ।
ଶୂନ୍ୟ ପୁରୁଷ କରେ ନଷ୍ଟ ଘଟ ।

ଶୂନ୍ୟ ପୁରୁଷ ଜାଣେ ଛନ୍ଦ କୂଟ ।
ଶୂନ୍ୟ ପୁରୁଷ ଶୂନ୍ୟରେ ମାରଇ ।
ମାରି ଶୂନ୍ୟେ ପୁଣ୍ୟ ଗତି କରଇ ।
ଶୂନ୍ୟ ପୁରୁଷ ଅଲଗେ ରହିଛି ।
ଶୂନ୍ୟ ପରେ ରହି ଲୀଳା କରୁଛି ।
ଶୂନ୍ୟ ସଂହିତା-ପୃ ୫୨

ନାନା ଗୁଣର କଳ୍ପନା କରିଯାଇ ପରମ ସତ୍ତା ବା ଶୂନ୍ୟ ପୁରୁଷ ଯେ ସର୍ବଶକ୍ତିମାନ୍—ଏହାହିଁ ଅଚ୍ୟୁତାନନ୍ଦ ଦର୍ଶାଇ ଦେଇ ଅଛନ୍ତି । (୨)

ସର୍ବଶକ୍ତିମାନ ଅଲେଖ ପୁରୁଷ ଏବଂ ଶୂନ୍ୟ ମଧ୍ୟରେ କୌଣସି ପ୍ରଭେଦ ନାହିଁ ବୋଲି ବୈଷ୍ଣବ କବି ଚୈତନ୍ୟ ଦାସ ଅନୁଭବ କରିଛନ୍ତି । ତେଣୁ ସେ କହନ୍ତି—

"ଶୂନ୍ୟ ସଙ୍ଗତେ ଶୂନ୍ୟ ସେ ଶୂନ୍ୟେ ଶୂନ୍ୟରୂପୀ
ଶୂନ୍ୟ ସଙ୍ଗତେ ମିଶିଅଛି ସକଳ ସ୍ଥାନେ ବ୍ୟାପି ।
ଶୂନ୍ୟ ସେ ତାହାର ଅଟଇ ନିଜ ଘର
ଶୂନ୍ୟରେ ଥାଇ ଶୂନ୍ୟେ କରଇ ବିହାର ।
( ବିଷ୍ଣୁଗର୍ଭ ପୁରାଣ )

ଆମର ପ୍ରାଚୀନ ସାହିତ୍ୟିକଗଣ ଆଧ୍ୟାତ୍ମିକ ବିଷୟର ଗୁଢ଼ତ୍ୱକୁ ସିଧା ସଳଖ ପ୍ରକାଶ ନ କରି ପ୍ରଶ୍ନକପୂର୍ଣ୍ଣ କରିଅଛନ୍ତି । ପଞ୍ଚସଖାଙ୍କର ସାଧନାରେ ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱର ବର୍ଣ୍ଣନା ଏହିପରି ରୂପକଧର୍ମୀ । ରହସ୍ୟବାଦର ସର୍ବଶ୍ରେଷ୍ଠ ପ୍ରକାଶ ହେଲା ପ୍ରକୃତି ଓ ପୁରୁଷର ନିବିଡ଼ ସଂପର୍କଜନିତ ବିଶ୍ଲେଷଣରେ । ରହସ୍ୟବାଦୀ କବିଗଣ ଆତ୍ମା ଏବଂ

୨ । ଅଚ୍ୟୁତାନନ୍ଦ ଓ ପଞ୍ଚସଖାଧର୍ମ -ପୃ ୯୩-୯୪

ପରମାତ୍ମା ମଧ୍ୟରେ କୌଣସି ପାର୍ଥକ୍ୟ ଉପଲବ୍ଧି କରନ୍ତି ନାହିଁ । ପଞ୍ଚସଖା ସାଧକ ଅଚ୍ୟୁତାନନ୍ଦ କହିଅଛନ୍ତି—

"ଜୀବ ଆତ୍ମା ରାଧେ ବୋଲି ପରମ ମୁରାରି" (୩)

ବୈଷ୍ଣବ ସାହିତ୍ୟରେ ରାଧାକୃଷ୍ଣଙ୍କର ଲୀଳା ଖେଳାର ଯେଉଁ ବର୍ଣ୍ଣନା ଦିଆ ଯାଇଅଛି, ତାହାକୁ ସାଧାରଣ ପାଠକ ଲୌକିକ ଧର୍ମ ଦୃଷ୍ଟିରେ ବିଚାର କରି ବେଳେ ବେଳେ ବିଚଳିତ ହୁଏ । ମାତ୍ର ଆଧ୍ୟାତ୍ମିକ ବିଶ୍ଳେଷଣଦ୍ୱାରା ରାମକୃଷ୍ଣଙ୍କୁ ପରମ ପୁରୁଷ ଏବଂ ରାଧାଙ୍କୁ ଆରାଧନାକାରିଣୀ ଶକ୍ତି ବୋଲି କଳ୍ପନା କରାଯାଇଅଛି । ତେଣୁ ଭକ୍ତକବି ଜଗନ୍ନାଥ ଦାସ କଳ୍ପନା କରିଛନ୍ତି—

ଏକାଙ୍ଗ ବ୍ରହ୍ମରୂପ ହୋଇ
ରାଧିକା ସଙ୍ଗେ ଭାବଗ୍ରାହୀ
ଗୋଲକନିତ୍ୟ ଏହା କହି
ଶୂନ୍ୟ ଦେଉଳ ଏ ବୋଲଇ ।" (୪)

ପିଣ୍ଡରେ ବ୍ରହ୍ମାଣ୍ଡର ପରିକଳ୍ପନା କେବଳ ଓଡ଼ିଶାର ବୈଷ୍ଣବ ସାଧକଗଣ ପ୍ରଚାର କରି ଯାଇନାହାନ୍ତି, କବୀର, ନାନକଙ୍କ ଭଳି ତତ୍କାଳୀନ ଅନ୍ୟପ୍ରାନ୍ତର ବୈଷ୍ଣବ ସାଧକଗଣ ମଧ୍ୟ ସମସ୍ୱରରେ ଘୋଷଣା କରିଅଛନ୍ତି । ପଞ୍ଚସଖା ସାଧକ ବଳରାମ ଦାସ ପିଣ୍ଡ ବ୍ରହ୍ମାଣ୍ଡର କଳ୍ପନା କରି ଲେଖିଛନ୍ତି—

ଯାହା ଦେଖୁଛୁ ଏ ବ୍ରହ୍ମାଣ୍ଡେ
ସମସ୍ତ ଅଛି ଏହି ପିଣ୍ଡେ
ବ୍ରହ୍ମାଣ୍ଡେ ଯେତେକ ଭିଆଣ
ପିଣ୍ଡରେ ଅଛଇ ସେମାନ । (୫)

---

(୩) ଶୂନ୍ୟସଂହିତା—୨ୟ ଅଧ୍ୟାୟ
(୪) ତୁଳାଭିଣା—ଜଗନ୍ନାଥ ଦାସ
(୫) ଅମରକୋଷ ଗୀତା—ଦ୍ୱିତୀୟ ଅଧ୍ୟାୟ

ଏହି ଦେହ ମଧ୍ୟରେ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳଠାରୁ ଆରମ୍ଭ କରି ସମାପ୍ତ ମହାଭାରତ ପର୍ଯ୍ୟନ୍ତ ସମସ୍ତ କିଛି କଳ୍ପନା କରାଯାଇଛି ।

ଏହି ଆତ୍ମାପକ୍ଷୀର କଥା ହିନ୍ଦୀ ସାହିତ୍ୟର କବୀରଙ୍କର ଏକ କବିତାର ଇଂରେଜୀ ଭାଷାନ୍ତରରୁ ଉପଭୋଗ କରାଯାଇପାରେ ।

"On the tree is a bird : it dances in the joy of life.
No one knows whence it is : nor
what the burden of its music may be ?
Where the branches throw a deep shade, there does
it have its nest; and it comes in the evening
and flies away in the morning and says
not a word of that which it knows.
No one can tell me of this bird that sings within me
It dwells within the unattainable, the Infinite and
the Eternal, and no one marks when it comes and
goes.
Kabir says, "O brother Sadhu deep is the mystery.
Let wise men seek to know where rests th: bird."

ପ୍ରାଚୀନ ରହସ୍ୟବାଦୀ ସାହିତ୍ୟରେ ଏହି ପ୍ରତୀକ ଭାବନାର ବହୁର ଭିନ୍ନ ଭିନ୍ନ ରୂପରେ ଦେଖିବାକୁ ମିଳେ । ମହିମାଧର୍ମର ବାଲ୍ୟଲୀଳା ପ୍ରସଙ୍ଗ ଏ କ୍ଷେତ୍ରରେ ଅଧିକ ପ୍ରଣିଧାନ ଯୋଗ୍ୟ- "ବାଲ୍ୟଲୀଳାର ଅନୁଷ୍ଠାନ ପଛରେ ଟିକିଏ ଦାର୍ଶନିକ ତତ୍ତ୍ୱ ନିହିତ ଥିବାର ଅନୁମିତ ହୁଏ । ଭାରତୀୟ ସାଧନାର ଇତିହାସରେ ଶିଶୁ ଶବ୍ଦଟି ଅତି ପରିଚିତ । ପ୍ରକାଶ ଓ ବିମର୍ଷର ଦ୍ୱି ରୂପ ହିଂସ୍ରାକୁ ଅତିକ୍ରମ କରାଇ ପରବ୍ରହ୍ମଙ୍କର ଅନନ୍ତ ରୂପର କଳ୍ପନା କରାଯାଇଥାଏ । ଏହି

ଅନନ୍ତରୂପ ହେଉଛି ଶିଶୁରୂପ । × × × ପରମସତ୍ତ୍ୱଙ୍କୁ ଏହି ଶିଶୁରୂପରେ ବର୍ଣ୍ଣନା କରିବାର ଦୃଷ୍ଟାନ୍ତ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଉଭୟ ଦର୍ଶନରେ ଦେଖିବାକୁ ମିଳେ । ଏକ ଚପଳ ମତ୍ତ ବାଳକ ପରି ସୃଷ୍ଟିକର୍ତ୍ତା ଅନାଦିକାଳ ଦାଣ୍ଡରେ ବସି କ୍ଷଣେ ଭାଙ୍ଗୁଛନ୍ତି, କ୍ଷଣେ ଗଢ଼ୁଛନ୍ତି, ଏହା ହିଁ ଭାରତୀୟ ଋଷିଙ୍କର ଅଦ୍ଭୁତ କଳ୍ପନା । ଗ୍ରୀସ୍ ଦେଶର ପ୍ରାଚୀନ ଦାର୍ଶନିକ ହେରାକ୍ଲିଟସ୍ ମଧ୍ୟ ଏହିପରି ଏକ ବାଳକର ବର୍ଣ୍ଣନା ଦେଇଛନ୍ତି ।"Eternity is a child at play it is the reign of a child ,"—Herachitus quoted in Christianity as mystical fact. Stiner. P. 45.

ଭୀମଭୋଇଙ୍କ ଭାଷାରେ—

'ବାଳକ ପରାୟେ ହୋଇ
ଅବନୀ ମଧ୍ୟରେ ଥାଇ
ବାହାର ନୁହ ।' (ଭଜନମାଳା-ଦ୍ୱିତୀୟ ଶତକ ପୃ ୮୪)

ମହିମା ଧର୍ମର ବାଲ୍ୟଲୀଳା ଏହି ବାଳକରୂପ କାଳାତୀତ କଳ୍ପନାତୀତ ବ୍ରହ୍ମର ଦ୍ୟୋତକ ବୋଲି ଅନୁମାନ କରାଯାଇ ପାରେ । (୭)

ସମାଜର ସାଧାରଣ ଲୋକେ ତତ୍ତ୍ୱଜ୍ଞାନକୁ ଗ୍ରହଣ କରିବା ସହଜ ନୁହେଁ । ତେଣୁ ତାନ୍ତ୍ରିକ କବିଗଣ ନାନା ପ୍ରତୀକ-ଭାବନାରେ ଜୀବ ଓ ପରମର ତତ୍ତ୍ୱକୁ ବୁଝାଇଛନ୍ତି ଏବଂ ପୁରାଣର କାହାଣୀଗୁଡ଼ିକୁ ନୂତନ ଦୃଷ୍ଟିରୁ ମଧ୍ୟ ବିଶ୍ଳେଷଣ କରିଚନ୍ତି । ଏଠାରେ ଭକ୍ତକବି ବଳରାମ ଦାସଙ୍କ ବ୍ରହ୍ମାଣ୍ଡ ଭୂଗୋଳ ବିଚାର୍ଯ୍ୟ । ଆଲୋଚ୍ୟ ପୁସ୍ତକରେ ଅର୍ଜୁନ ଓ ଭଗବାନଙ୍କ ପ୍ରଶ୍ନୋତ୍ତର ଛଳରେ ବହୁ ପୌରାଣିକ

(୭) ଓଡ଼ିଶାର ମହିମାଧର୍ମ-ଚିତ୍ତରଞ୍ଜନ ଦାସ-୧୯୫୨ ପୃ ୮୧-୮୨

କାହାଣୀର ତାତ୍ତ୍ୱିକ ବିବୃତ୍ତି ଦେଖିବାକୁ ମିଳେ । ଉଦାହରଣ ସ୍ୱରୂପ—

"କପୋତ କପୋତି ବାଳକ । ଯେବେ ଚଳିଲା ଲୁବ୍‌ଧକ ।
ଶବର ଜାଲରେ ପଡ଼ିଲା । ଏ କଥା ସଂଶୟ ଲାଗିଲା ।
କପୋତ କପୋତି କେ ପୁଣ । ବାଳକ କେହୁ ତା ପ୍ରମାଣ
ଶବର କେଉଁଠାରେ ଥିଲା ? ଆହାର କେହୁ ବୋଲାଇଲା ?
ଜାଲ ବୋଲିଣ ଏ କେମନ୍ତ । ଗୃଧ୍ରବଗଟି କେହୁତତ୍ତ୍ୱ ?
ବୃକ୍ଷ ଯେ କେଉଁଠାରେ ଥିଲା । ବନ କେମନ୍ତ ବୋଲାଇଲା ।
ଏ ଅର୍ଥ ଫେଡ଼ି ମୋତେ କହ । ମନରୁ ଫେଡ଼ ମୋ ସନ୍ଦେହ ।

ଭଗବାନ ଉବାଚ :—

ଶୁଣ ଅର୍ଜୁନ ମନଦେଇ । ଉତ୍ତମ ଶିଷ୍ୟେ ଗୁରୁ କହି ।
ବୃକ୍ଷ ବୋଲିଣ ଦେହ ଜାଣ । ଜୀବ ପରମ ପକ୍ଷୀ ପୁଣ ।
ଜୀବଟି କପୋତି ହୋଇଲା । କପୋତ ପରମକୁ ଗଲା ।
ଏ ବୃକ୍ଷେ ବେନି ପକ୍ଷୀଥାନ୍ତି । ଏକ ଆରେକ ବିହରନ୍ତି ।
ପରମ ଶୂନ୍ୟ ତାର ବାସ । ସକଳ ଭାବେ ସେ ଉଦାସ ।
ନିରତେ ପକ୍ଷୀରୂପେ ଥାଇ । ବାସନା ଭୋଗେ ତୋଷ ହୋଇ ।
ରାମ ନାମଟି ତାହାଙ୍କର । ସାକ୍ଷ ସ୍ୱରୂପେ ତା ବିହାର ।
କପୋତି ମାୟାରେ ବିହରେ । ନିରତେ ନାନା କର୍ମକରେ ।
ମତ୍ତ ଗର୍ବରେ କର୍ମକରି । ସ୍ତ୍ରିଶ୍ୱ ସଙ୍ଗମେ ନିତ୍ୟେ ପଡ଼ି ।
ଏମନ୍ତେ ପ୍ରାଣୀ ଯାଇ ନାଶ । ଶୁଣ ଅର୍ଜୁନ ଜ୍ଞାନରସ ।
ପ୍ରଳୟ କାଳର ଏ କଥା । ଶୁଣିବାକୁ ତୁ ସାମରଥା ।
କାଳଟି ଶବରକୁ କହି । ସନ୍ନିପାତଟି ଜାଲ ହୋଇ ।
ବେନି ବାଳକ ଚକ୍ଷୁ ପୁଣ । ଆହାର ରକ୍ଷସଟି ଜାଣ ।

ଏ ଦେହ ବନ ବୋଲି କହି । କର୍ଣ୍ଣନାସିକା ବାଟ ହୋଇ ।
ସନ୍ନିପାତଟି ଆକର୍ଷଇ । ଏମନ୍ତେ ପ୍ରଳୟ ହୁଅଇ ।
ମୁଖ ନାସିକା ଚକ୍ଷୁକର୍ଣ୍ଣ । ଏ ଗୃହଦ୍ୱାର ହୋଇ ଶୂନ୍ୟ ।
ରାଆ ଶବଦଟି ହଜିଲା । ଜୀବ ପରମ ଖୋଜିଗଲା ।
ଶଆଁ ଚୈତନ୍ୟ ବେନ ବାଳେ । ଏଣେ ପଡ଼ନ୍ତି ଯାଇଁ ଜାଲେ ।
କପୋତ କପୋତି ମିଳନ୍ତି । ଗୃହଦ୍ୱାରକୁ ସେ ଗମନ୍ତି ।
ସମସ୍ତେ ବୃକ୍ଷ ଗୁଡ଼ିଗଲେ । ଓଁକାର ଶବଦେ ମିଳିଲେ ।
ଶବର ଧେନ ଚଳିଗଲା । ନିଜ ଭୁବନରେ ଶୋଇଲା । (୭)

ଏ ତ ଗଲା ପ୍ରାଚୀନ ଯୁଗର ସାହିତ୍ୟର କଥା । ଧର୍ମର ଧାରଣା ହିଁ ସେ ଯୁଗର ସାହିତ୍ୟରେ ଅଧିକ ପ୍ରାଣବନ୍ତ । ଯଦିଓ ଆଧୁନିକ ସାହିତ୍ୟରେ ରହସ୍ୟ ବ୍ୟଞ୍ଜକ ଭାବନାର ଅଭାବ ନାହିଁ, ଏହାର ପ୍ରେରଣା ଆଧ୍ୟାତ୍ମିକତା ନୁହେଁ । ଭାବନାର ଆବେଗରେ କବି ଅରୂପ ଅଦୃଶ୍ୟ ରାଜ୍ୟ ସହିତ ଯେଉଁ ସମ୍ପର୍କ ସ୍ଥାପନ କରିଛନ୍ତି, ତାହା ପାଠକ ନିକଟରେ ରହସ୍ୟମୟ ବୋଧ ହୋଇଅଛି । ଏହି ପ୍ରସଙ୍ଗରେ ଭକ୍ତକବି ମଧୁସୂଦନ, କାନ୍ତକବି ଲକ୍ଷ୍ମୀକାନ୍ତ ଏବଂ ବୈକୁଣ୍ଠନାଥ ପ୍ରଭୃତି କବିମାନଙ୍କର କବିତା ଉଲ୍ଲେଖଯୋଗ୍ୟ ।

ଭକ୍ତକବି ମଧୁସୂଦନ କଳ୍ପନା ନୟନରେ ବୈଦିକ ଯୁଗର ସରସ୍ୱତୀ ନଦୀକୂଳରେ ବୈଦିକ ଋଷିର ସେହି ଦିବ୍ୟ ତେଜସ୍ୱାନ୍ ମୂର୍ତ୍ତି କଳ୍ପନା କରି ଲେଖିଛନ୍ତି—

"ଅମୂର୍ତ୍ତି ମୂରତି ଆହା ରୂପ ନିରୁପମ,
ଅନନ୍ତ ଅନଳ, ବ୍ୟାପି ସ୍ଥାବର ଜଙ୍ଗମ ।
ଦେଶ କାଳାତୀତ ଦୃଶ୍ୟ କଳ୍ପନା-ଅତୀତ,
ଅଥଚ ଜ୍ୟୋତିର ଜ୍ୟୋତି ଚକ୍ଷୁ ଅଗ୍ରେ ସ୍ଥିତ ।"
(ଋଷିପ୍ରାଣେ ଦେବାବତରଣ)

---

(୭) ବ୍ରହ୍ମାଣ୍ଡ ଭୂଗୋଳ—ଷଷ୍ଠ ଚତ୍ୱାରିଂଶ ଅଧ୍ୟାୟ ।

କବି ସଂସାରର ମାୟାଜାଲ ବନ୍ଧନରେ ବାନ୍ଧିହେବାକୁ ଆଗ୍ରହୀ ନୁହେଁ । ଏହି ମାୟାଜାଲକୁ ଛିନ୍ନ କରି ସେ ଆଜି ନିଜର ଲକ୍ଷ୍ୟ ପଥରେ ଯିବାପାଇଁ ସ୍ଥିରସଂକଳ୍ପ । ତେଣୁ ସେହି ଅରୂପ ରାଜ୍ୟର ଆହ୍ୱାନ କବିଙ୍କୁ ବିଚଳିତ କରିବା ସ୍ୱାଭାବିକ । ମିଷ୍ଟିକ କବି ରବୀନ୍ଦ୍ର ନାଥ ସେହି ବଂଶୀଧ୍ୱନି ଶୁଣିପାରି ଗାଇ ଥିଲେ—

"ଆମାର ଆର ହବେନା ଦେରୀ

ଆମି ଶୁନେଛି ଐ ବାଜେ ତୋମାର ଭେରୀ"

(ଗୀତାଞ୍ଜଳୀ)

ଆଧୁନିକ ଯୁଗର କାନ୍ତକବି ଲକ୍ଷ୍ମୀକାନ୍ତ ସେହି ଆହ୍ୱାନରେ ବିଚଳିତ ହୋଇ ଗାଇଛନ୍ତି—

"କିଏ ସେ ଡାକୁଛି ନଈ ସେ ପାରିରେ
ରହି ରହି କେଉଁ ବାଗରେ
ହୋ ହୋ ରହିଲା ସ୍ୱର ଶୁଣିଥିଲି ପରି
କେତେ ଯୁଗ ଯୁଗ ଆଗରେ
କେଉଁ ଉହାଡ଼ରେ ଥାଇ ସେ ଡାକୁଛି
ଖଣ୍ଡି ସ୍ୱର ତା'ର ନ ହେଉଛି ବୁଝି
କେଉଁ ଗୁହା ଭେଦି ପହଁରି ଆସିଛି
କେଉଁ ନିଗୁଟିଆ ସାଗରେ ।

(ଜୀବନ ସଂଗୀତ)

ପୃଥିବୀକୁ ବର୍ଷା ଋତୁ ଆସେ । ବର୍ଷାର ଆଗମନୀରେ ସୁନ୍ଦରୀ ଧରଣୀ ସବୁଜଶ୍ରୀ ଧାରଣ କରେ । ପ୍ରକୃତିର ସଂସାରରେ ନୂତନ ଲୀଳାଖେଳା ସୃଷ୍ଟି ହୁଏ । ମରମୀ କବି ରବୀନ୍ଦ୍ର ସେହି ଝର ଝର ବର୍ଷାର ସଙ୍ଗୀତରେ ଶୁଣିବାକୁ ପାଉଛନ୍ତି—

"ଏ ଆସେ ଏ ଅତି ଭୈରବ ହରଷେ
ଜଳ ସଞ୍ଚିତ କ୍ଷିତି ସୌରଭ ରଭସେ
ଘନ ଗୌରବେ ନବ ଯୌବନ ବରଷା
ଶ୍ୟାମ ଗମ୍ଭୀର ସରସା
ଗୁରୁ ଗର୍ଜନେ ନୀଳ ଅରଣ୍ୟ ଶିହରେ
ଉତଲା କଳାପୀ କେକା-କଳରବେ ବିହରେ ;
ନିଖିଳ ଚିତ୍ତ ହରଷା,
ଘନ ଗୌରବେ ଆସିଛି ମତ୍ତ ବରଷା ।"

(ବର୍ଷା ମଙ୍ଗଳ-କଳ୍ପନା)

କବି ବୈକୁଣ୍ଠନାଥ ମଧ୍ୟ ତାଙ୍କର 'ବର୍ଷା ବରଣ' କବିତାରେ ବର୍ଷାର ମେଘକୁ ଚିତ୍ରିତ କରିଛନ୍ତି ଅମୃତର ଉତ୍ସ ରୂପରେ । ତାଙ୍କ ମତରେ ବର୍ଷା ହେଉଛି ନୂତନ ଜୀବନର ବାହକ । ତାହାର ଆଗମନରେ ନିର୍ଜୀବ, ନିସ୍ତେଜ, ଜଡ଼ ପ୍ରକୃତି ସଂସାରରେ ନୂତନ ଜୀବନର ସଂଚାର ହୁଏ । ବର୍ଷା ଆସେ କେତେ ଆଶାର ପ୍ରତୀକ ଭାବରେ । ସତେ ଯେପରିକି ବର୍ଷାର ମେଘ ନୂତନ ସୁଖାଲୋକର ବାର୍ତ୍ତା ବହି ଆଣେ ! ତେଣୁ ସେ ଯେତେବେଳେ ମେଘକୁ ଆହ୍ୱାନ କରନ୍ତି—

"ତପ୍ତ ବିକଳ ଏଇ ଧରଣୀ
ଶୂନ୍ୟ ବିଜନ ଦୂର ସରଣୀ
ଶ୍ରୀହୀନ ବିବସ କେ ରମଣୀ
ଆଗମନ ପଥେ ମେଲି ବାସ
ଡାକେ ଆସ, ଘନ ଆସ ।"

(ବର୍ଷାବରଣ-କାବ୍ୟ ସଂଞ୍ଚୟନ)

ଏଠାରେ ମେଘର ଆହ୍ୱାନର ଅନ୍ତରାଳରେ ରସବର୍ଷୀ ଶକ୍ତିଧର ଦେବତାର ଆବାହନୀ କରାଯାଇଛି ବୋଲି ମନେହୁଏ ।

ସେହିପରି ବୈକୁଣ୍ଠନାଥ ତାଙ୍କର "ଯାତ୍ରା ସଙ୍ଗୀତ"ରେ ନିରୁଦ୍ଦେଶ୍ୟ ଯାତ୍ରାର କଥା ହିଁ ସ୍ମରଣ କରିଛନ୍ତି । ମଣିଷ ହେଉଛି ଏହି ଧରାଧାମରେ ଜଣେ ପାନ୍ଥ । ତାହାର ଯାତ୍ରାର ସୀମା ନାହିଁ । ଜନ୍ମ ଜନ୍ମାନ୍ତର ଧରି ତା'ର ଏ ଯାତ୍ରା ଅବିରାମ ଗତିରେ ଚାଲିଛି । ଏ ଯାତ୍ରା ଅସୀମ ଏବଂ ଅନନ୍ତ । ଏ ଯାତ୍ରାର ଉଦ୍ଦେଶ୍ୟ ହେଉଛି ଅମୃତର ସନ୍ଧାନ । ରବୀନ୍ଦ୍ରନାଥ ଏହି ଅରୂପ ରାଜ୍ୟର ଉଦ୍ଦେଶ୍ୟରେ ଲେଖିଛନ୍ତି—

"ଆମି ଚଞ୍ଚଲ ହେ, ଆମି ସୁଦୂରେର ପିୟାସୀ"

ତାହାର ପ୍ରତିଧ୍ୱନି ଭଳି ବୈକୁଣ୍ଠଙ୍କ ଯାତ୍ରାସଂଗୀତରେ ସେହି ସୁଦୂର ରାଜ୍ୟର ଆଲୋଡ଼ନ ଆମ୍ଭେମାନେ ଶୁଣିବାକୁ ପାଉ । ସେ ଏହି ମୋହମାୟାପୂର୍ଣ୍ଣ ସଂସାରର ଆଶକ୍ତିକୁ ଛିନ୍ନ କରି ପଳାଇ ଯିବାକୁ ବ୍ୟାକୁଳ ।—

"ମାନସ ହଂସ ମୁଁ ମାନସେ ଯିବି ଉଡ଼ି
ମୋ ଦୋଷେ ପଥ ହୁଡ଼ି ଭରମେ ଅବିରତ ।"

ସେହି ବୃହତ୍ତର ଚେତନା ଏବଂ ସତ୍ୟ ଆଡ଼କୁ ଅଗ୍ରସର ହେଉ ହେଉ କବି ଶୁଣିଛନ୍ତି—

"ପରାଣ କୁଞ୍ଜେ ଗୋ ତାର ମୁରଲୀ ଧ୍ୱନି
ପରାଣ ପବନେ ଗୋ ତା ଶୁଭ ଆଗମନ
ଜୀବନେ ଦେବା ନେବା ଭିଆଣ ସବୁ ତା'ର
ସେ ମହାଦାମା ହସେ
ପରାଣେ ଦେଖି ନାହୁଁ ।"

ତେବେ ଆଧୁନିକ ମରମୀ କବିତା ପାଠ କରି କେହି କେହି ତାହାକୁ ରୋମାଣ୍ଟିକ ଭାବନା ବୋଲି ଭ୍ରମ କରିପାରନ୍ତି । ରୋମାଣ୍ଟିକ

କବି ସ୍ୱପ୍ନସ୍ୱପ୍ନମୂଢ଼ ଦୃଷ୍ଟିରେ ଯାହାର ସନ୍ଦର୍ଶନ କରେ, ମରମୀ କବି ତାହାକୁ ନିଜର ଅନ୍ତରତମ ପ୍ରଦେଶରେ ଅନୁଭବ କରେ । କାନ୍ତକବି ଲକ୍ଷ୍ମୀକାନ୍ତଙ୍କର "ଜୀବନ ସଂଗୀତ"ର ବହୁ କବିତା ଏବଂ ବୈକୁଣ୍ଠନାଥଙ୍କ 'ବାସର ଗୃହ' 'ପାନ୍ଥଶାଳା' ବର୍ଷାବରଣ, ଶିଶୁସୃଷ୍ଟି ପ୍ରଭୃତି କବିତା ପାଠ କଲେ ଏହା ଉପଲବ୍ଧି କରାଯାଇ ପାରେ । ମରମୀ ଭାବନା ବସ୍ତୁର ଓ ଜ୍ଞାନର ଅପେକ୍ଷା ରଖେ ନାହିଁ, ତାହା ଏକ ଅପୂର୍ବ ଅନୁଭୂତି । ଏହି ସୀମାହୀନ ଅରୂପର ସ୍ୱାଦ-ଗ୍ରହଣ ଏକ ଦିବ୍ୟ ଅନୁଭୂତି କହିଲେ ଠିକ୍ ହେବ ।

ସବୁକାଳରେ ଚିରନ୍ତନ କବିତାର ଏହା ହିଁ ହେଉଛି ପ୍ରାଣଧର୍ମ ।

———

# ବଙ୍ଗଳା ମରମୀ କାବ୍ୟ

## ଶ୍ରୀ ବିବେକାନନ୍ଦ ମୁଖର୍ଜୀ

କାବ୍ୟର ରସ ଗୋଟିଏ ଆନନ୍ଦ-କ୍ଷଣ-ସ୍ୱରୂପ ଚେତନା । ଆଳଙ୍କାରିକମାନେ ରସର ଆସ୍ୱାଦକୁ ଯୋଗୀର ବ୍ରହ୍ମାସ୍ୱାଦ ସଙ୍ଗେ ତୁଳନା କରି ଅଛନ୍ତି; କିନ୍ତୁ କାବ୍ୟର ଉପାଦାନ ସେଉଁସବୁ ଭାବ, ସେ ଗୁଡ଼ିକ ଲୌକିକ । ଲୌକିକ ଭାବହାସଲୋକର ଅଲୌକିକ ଆନନ୍ଦମୟ ପରିଣତି ଯେପରି ହୋଇ ଏବଂ ସେହି ଆନନ୍ଦମୟ ରସ ପରିଣାମରେ ଅରସିକ ପାଠକର ଅଧିକାରର ସୀମା ରସିକମାନେ ଯେଉଁଠାରେ ନିର୍ଦ୍ଦେଶ କରନ୍ତୁ ଏକଥା ସ୍ୱୀକାର କରିବାକୁ ହେବ ଯେ ଏହିସବୁ ଲୌକିକ ଶୋକ ହର୍ଷର ବାସନା ସାଧାରଣତଃ ସବୁ ମଣିଷର ଅଛି ; କିନ୍ତୁ ମରମୀ କାବ୍ୟର ବିଷୟରୂପେ ଯାହାକୁ ସ୍ୱୀକାର କରାହୋଇଛି, ତାହା ସମ୍ପର୍କରେ ବାସନାର ସେପରି ବ୍ୟାପକତା ନାହିଁ । ଅବଶ୍ୟ କୌଣସି ପ୍ରକାରର ଧର୍ମଚେତନା,

ପୂଜାର୍ଚ୍ଚନା ଇତ୍ୟାଦିରେ ବିଶ୍ୱାସ .ସବୁଦେଶରେ ହିଁ ଅଳ୍ପ ବହୁତ ବ୍ୟାପକ ଭାବରେ ବର୍ତ୍ତମାନ । କିନ୍ତୁ ଏହି ସଂସ୍କାରମୟ ଭାବଦ୍ଧୀପନରେ ବିଶେଷ କବିକୃତିର ପ୍ରୟୋଜନ ହୁଏ ନାହିଁ । କୃଷ୍ଣ ନାମ କହିଲେ ଯାହାର ଚକ୍ଷୁ ଜଳପୂର୍ଣ୍ଣ ହୋଇଯାଏ ତାହାର ପକ୍ଷରେ କାବ୍ୟ ପ୍ରୟାସ ବୃଥା । ତେଣୁ ଶ୍ରେଷ୍ଠ ଧରଣର ମିଷ୍ଟିକ୍ କାବ୍ୟ ସଂସ୍କାର ମାନଙ୍କୁହିଁ ପ୍ରାମାଣ୍ୟ କରି ରଚିତ ହୋଇ ପାରେନାହିଁ । ଏହା ବ୍ୟକ୍ତିତ ସଂସ୍କାର ବିଭିନ୍ନ ଦେଶରେ ସ୍ୱତନ୍ତ୍ର । ତା'ର ଲୋକୋତ୍ତରତା ସେପରି କିଛି ନାହିଁ ।

ତେଣୁ ସ୍ୱଭାବତଃ ଏପରି କାବ୍ୟ—ଉପାଦାନର ବିଚାରରେ ଆମ୍ଭେମାନେ ଅଗ୍ରସର ହେବୁଁ, ଯାହାର ଆବେଦନ ଦେଶକାଳରେ ଖଣ୍ଡିତ ନୁହେଁ । (ଅର୍ଥାତ୍ ଖ୍ରୀଷ୍ଟ, କୃଷ୍ଣ, ମହମ୍ମଦରୂପେ ଯେ ଶେଷରେ ଚିହ୍ନିତ ନୁହନ୍ତି । ) ଆମ ଦେଶରେ ଶାସ୍ତ୍ରକାର କବିମାନେ ଏହାଙ୍କର ରୂପକୁ ଏକପ୍ରକାର କରି ଦେଖି ଥିଲେ । ଉପନିଷଦ ଏହାର ଉଦ୍ଦେଶ୍ୟରେ କହିଛନ୍ତି ।

ଯ ଏକୋବର୍ଣ୍ଣୋ ବହୁଧା ଶକ୍ତିଯୋଗାତ୍
ବର୍ଣ୍ଣାନ-ନେକାନ୍ ନିହିତାର୍ଥୋ ଦଧାତି ।
ବି-ଚୈତି ଚାନ୍ତେ ବିଶ୍ୱମାଦୌସ ଦେବଃ
ସନୋ ବୁଦ୍ଧ୍ୟା ଶୁଭୟା ସଂଯୁନକ୍ତୁ ।
ଶ୍ୱେତାଶ୍ୱତର ୪/୧ ।

ଏହି ନାମରୂପାଶ୍ରିତ ବିଶୁଦ୍ଧ ଚେତନାମୟର ଧାରଣା କୌଣସି ଦେଶକାଳର ସଂସ୍କାରଦ୍ୱାରା ଖଣ୍ଡିତ ନୁହେଁ; ଏହି କାବ୍ୟର ଆବେଦନ ସେଥିପାଇଁ ଦେଶକାଳର ଚେତନା ଦ୍ୱାରା ବିନ୍ଦୁମାତ୍ର ବାଧାପ୍ରାପ୍ତ ହୁଏନାହିଁ । କାବ୍ୟର ଉପାଦାନ ଯେହେତୁ ଲୌକିକ; ସେଥିପାଇଁ ତା'ର ରସ ପରିଣାମ ଲୋକୋତ୍ତର ହେଲେ ମଧ୍ୟ ତାହା

ବୁଝିବା ପାଇଁ କବିଙ୍କ ନିଜ ଦେଶର ସଂସ୍କାର ସଙ୍ଗେ ପରିଚୟ ଥିବା ଆବଶ୍ୟକ । ରବୀନ୍ଦ୍ରନାଥଙ୍କର ନିମ୍ନଲିଖିତ ଉଦ୍ଧୃତ କବିତାଟିରେ ମା'ର ଯେଉଁ ରୂପଧ୍ୟାନ ଅଛି, ତାହାର ପରିପୂର୍ଣ୍ଣ ରସାସ୍ୱାଦ ଏ ଦେଶର ସଂସ୍କାରର ଅନୁଶୀଳନ ଦ୍ୱାରହିଁ ସମ୍ଭବ । ଯଦିଓ ମାତୃତ୍ୱର ଧାରଣାଟି ସାର୍ବଜନୀନ—

କାମ୍ପିୟା କାମ୍ପିୟା ଦୀପ ଖାନି ତବ
ନିବୁ ନିବୁ କରେ ପବନେ
ଜନନୀ ତାହାରେ କରିଓ ରକ୍ଷା
ଆପନ ବକ୍ଷ ବସନେ ।
ତୁଲି ଧରେ ତାରେ ଦକ୍ଷିନ କରେ
ତୋମାର ଲଲାଟେ ଯେନ ଆଲୋ ପଡ଼େ,
ଭନ୍ନ ଦୂରହତେ ଫିରେ ଆସି ଘରେ
ନା ଭୁଲି ଆଲେୟା—ଛଲନେ ।
ଏପାରେ ଦୁଆର ରୁଦ୍ଧ ଜନନୀ, ଏ ପର ପୁରୀର ଭବନେ ।

ତଥାପି ସଂସ୍କାରମୟ ଉପାଦାନବହୁଳ ମିଷ୍ଟିକ୍ କାବ୍ୟ ହିଁ ଲୋକଙ୍କୁ ଅପୂର୍ବ ସ୍ୱାଦ ଦେଇଅଛି, ମନୁଷ୍ୟର ତମଃ ରଜକୁ ସମ୍ପୂର୍ଣ୍ଣ ଅଭିଭୂତ କରି ସାତ୍ତ୍ୱିକ ଭାବର ଉଦୟ ଘଟାଇଛି; ଲୌକିକ ଜୀବନର ଶୋକତାପଠାରୁ ଅନ୍ତତଃ ସାମୟିକ ଭାବେ ମନୁଷ୍ୟକୁ ମୁକ୍ତ ଦେଇ ଅଛି । "ଧର୍ମ ମଙ୍ଗଳ" କାବ୍ୟରେ ହରିହର ମାଇତିଙ୍କୁ ବିନାପରାଧରେ ଯେତେବେଳେ ଶୂଳକୁ ଯିବାକୁ ଆଦେଶ ହେଲା ସେତେବେଳେ ସେ କହନ୍ତି—

"ଶୂଳତେ ଚଢ଼ନ ଯାୟ ଆମି ନାହି କାନ୍ଦ ତାୟ
କାନ୍ଦିୟା କାତର ଏଇ ଶୋକେ ।

ତୋମାର ଦାସେର ଦାସ ମିଥ୍ୟାବାଦେ ହସ୍ତ ନାଶ
ଧର୍ମ ମିଥ୍ୟା ପାଛେ ବଲେ ଲୋକେ ।”

ଏଥିରେ ଯେ କେବଳ ଲୌକିକ ଦୁଃଖ କାତରତାର ରସ-ମୂର୍ତ୍ତି ପ୍ରକାଶ ପାଇଛି ତାହା ନୁହେଁ, ତାହାସଙ୍ଗେ ଏପରି ଗୋଟିଏ ଅଲୌକିକ ବିଶ୍ୱାସ ଏବଂ ଶାନ୍ତିର ଭାବ ପ୍ରକାଶ ପାଇଛି ଯାହା ଲୌକିକ ଶୋକଦୁଃଖ ହରଣ କରେ ଏବଂ ମନୁଷ୍ୟକୁ ଯେଉଁ ଲୋକକୁ ନେଇ ଯାଏ ତାହା କେବଳ ରସର ଅଲୌକିକ ଜଗତ ନୁହେଁ ।

ଅତଏବ ମରମୀ କାବ୍ୟର ବିଚାରରେ ଆମ୍ଭେମାନେ ବଙ୍ଗଳାର ସେହିସବୁ କାବ୍ୟକୁ ମଧ୍ୟ ଗ୍ରହଣ କରିବୁଁ ଯେଉଁଠାରେ ସଂସ୍କାରମୟ ଭଗବତ୍ ଉପଲବ୍‌ଧିର ସ୍ୱାଦ ଅନେକ ପରିମାଣରେ ଅଛି । ମରମୀ କବି ମାନେ ହିଁ କିଛି କିଛି ପ୍ରତୀକର ବ୍ୟବହାର କରିଛନ୍ତି । ଏହି ପ୍ରତୀକ ସଂସ୍କାରମୟ ହୋଇପାରେ ଅଥବା କବିକୃତ ନୂତନ ନିର୍ମିତ ହୋଇପାରେ । ହିନ୍ଦୁର ଶାଳଗ୍ରାମ ଶିଳା ଏବଂ ଖ୍ରୀଷ୍ଟିୟାନର କ୍ରୁଶ୍ ଚିହ୍ନ ସଂସ୍କାରମୟ ପ୍ରତୀକ; ପୁଣି ମେଟାର୍‌ଲିଙ୍କଙ୍କର, ରବୀନ୍ଦ୍ରନାଥଙ୍କର ପ୍ରତୀକ ଜଗତଗୁଡ଼ିକ ସମ୍ପୂର୍ଣ୍ଣ ନୂତନ କବିକୃତ । ସେହି ସେହି କାବ୍ୟ ପାଠ କରିଲେ ସକଳ ସହୃଦୟ ପାଠକଙ୍କର ଚିତ୍ତରେ ତା’ର ସ୍ଫୂର୍ତ୍ତି ଘଟେ ।

ଆମ୍ଭମାନଙ୍କର ଦେଶର ପ୍ରତ୍ୟେକ ଧର୍ମ-ସମ୍ପ୍ରଦାୟର ନିଜ ନିଜର ପ୍ରତୀକ ଅଛି । ଥରେ ମାତ୍ର ଦେଶର ଲୋକମାନଙ୍କ ମନରେ ତା’ର ପ୍ରତିଷ୍ଠା ହୋଇଗଲେ କବିକୁଳ ପାଠକ ମନରେ ତା ସମ୍ପର୍କରେ ନୂତନରୂପେ ଚେତନା ସଞ୍ଚାରର ପ୍ରୟାସ କରିପାରେନା । ସେମାନଙ୍କର ସେହି ସଞ୍ଚାରକୁ ମାତ୍ର ନେଇ ତାହାର ଭିତ୍ତିରେ ଅଲୌକିକ ଭବ-ରସର କାବ୍ୟ-ବୀଜ ବପନ କରିଛନ୍ତି । ଏଥିରେ

ତାଙ୍କର କାର୍ଯ୍ୟ କିଛି ପରିମାଣରେ ସହଜ ହୋଇଅଛି ; ଅନେକ କ୍ଷେତ୍ରରେ ଏପରି ହୋଇଛି ଯେ ବିଶେଷ ଧରଣର ସହୃଦୟତାହୀନ ପାଠକ ତହିଁରେ ଲୌକିକ ଭାବର ରସପରିଣାମ ମାତ୍ର ଦେଖିଛନ୍ତି । କିନ୍ତୁ ଏହି ସବୁ କାବ୍ୟ ସମଗ୍ରଭାବେ ପଢ଼ିଲେ ସେ ଭ୍ରମ ଭାଙ୍ଗିଯିବ । ବୁଝିବାକୁ ଲେଶ ମାତ୍ର ବିଳମ୍ବ ହେବନାହିଁ ଯେ ଏହିସବୁ କଥା ଏ 'ଦେଶର' ନୁହେଁ । ସେହି ସବୁ ହୃଦୟହୀନ ପାଠକମାନଙ୍କୁ ଉଦ୍ଦେଶ୍ୟ କରି ଚଣ୍ଡୀଦାସ କହିଛନ୍ତି—

"ମରମ ନା ଜାନେ ଧରମ ବାଖାନେ
ଏମନ ଆଛୟେ ଯାରା
କାଜ ନାଇ ସଖୀ ତାଦେର୍ କଥାୟ
ବାହିରେ ରହୁନ୍ ତାରା ।"

ଏହା ବ୍ୟକ୍ତିତ ଯେ ଅବାଙ୍ମାନସଗୋଚର, ଯେ ରୂପାତୀତ; କେବଳ ମାତ୍ର ସେହି ରୂପବିବର୍ଜିତଙ୍କର ଧ୍ୟାନକଳ୍ପନା ରୂପକୁ ଆଶ୍ରୟ କରି ଅରୂପ ଲୋକକୁ ଆଗେଇ ଯିବା ହିଁ ହୁଏତ ମରମୀ କାବ୍ୟର ଶେଷକଥା ନୁହେଁ । ମନୁଷ୍ୟ ଯେ ଶୋକ ଦୁଃଖମୟ ଜଗତରୁ ସେହି ଆନନ୍ଦଲୋକରେ ମୁକ୍ତି ଖୋଜୁଅଛି, ଯେଉଁ ରୂପର ଜଗତରୁ ସେହି ଅରୂପ ଜଗତକୁ ଯାତ୍ରା କରିଅଛି, ତା'ର ରସପରିଣତି ମଧ୍ୟ ଏହି କାବ୍ୟର ଗୋଟିଏ ବିଶିଷ୍ଟ ଅଙ୍ଗ । ସେହି ଦିଗରୁ ସଂସ୍କାରମୟ ଧର୍ମ-ଉପାସକ ରସିକ-କବି ବିଦ୍ୟାପତିଙ୍କର ନିମ୍ନଲିଖିତ କବିତାଟିରେ ସ୍ୱୀୟ ଅନିଶ୍ଚିତ ପରିଣାମ ସମ୍ପର୍କରେ ଯେଉଁ ଉଦ୍‌ବେଗ ପ୍ରକାଶ ପାଇଛି ଏବଂ ପରବର୍ତ୍ତୀ ରବୀନ୍ଦ୍ରନାଥଙ୍କର କବିତାଂଶଟିରେ ପତନ ବ୍ୟଥା ଏବଂ ବିରୋଧ କୋଳାହଳର ଯେଉଁ ପୀଡ଼ା ବର୍ଣ୍ଣିତ ତାହା ଦୁଇଟି ପାଠକର ମନକୁ ଗୋଟିଏ ରସରେ ବିଗଳିତ କରିଦିଏ । ଯଦିଓ ରବୀନ୍ଦ୍ରନାଥ ଅରୂପର ନୂତନ ରୂପକାର ଏବଂ ବିଦ୍ୟାପତି ପୂର୍ବଗାମୀ-ମାନଙ୍କର ସଂସ୍କାରମୟ ଦୃଷ୍ଟିକୁ ହିଁ ମାତ୍ର ଦେଇଛନ୍ତି ;—

ମାଧବ ବହୁତ ମିନତି କରି ତୋଷୁ
ଦେଇ ତୁଲସୀ ଦଲ ଦେହ ସମାର୍ପନୁ
ଦୟାଜନୁ ଛୋଡ଼ବ ମୋୟ ॥
ଗନଇତେ ଦୋଷ ଗୁଣ ଲେକ ନ ପାଓବ
ଯବତୁହୁ କରବ ବିଚାର
ତୁହୁଁ ଜଗନ୍ନାଥ ଜଗତେ କହାୟସି
ଜଗ ବାହିର ନହି ମୁଇଁ ଛାର ॥
କିୟେ ମାନୁଷ ପଶୁ ପାଖୀ କଏ ଜନମିୟେ,
ଅଥବା କୀଟ ପତଙ୍ଗ,
କରମ ବିପାକେ ଗତାଗତି ପୁନପୁନ
ମତି ରହୁତୁୟା ପରସଙ୍ଗ ॥
ଭନୟେ ବିଦ୍ୟାପତି ଅତିଶୟ କାତର
ତରଇତେ ଇହ ଭବସିନ୍ଧୁ!
ତୁୟା ପଦପଲ୍ଲବ କରି ଅବଲମ୍ବନ
ତିଲ୍ ଏକ ଦେହ ଦୀନବନ୍ଧୁ!

—ବିଦ୍ୟାପତି—

ମୃତ୍ୟୁ ଭେଦ କରି
ଅମୃତ ପଡ଼େ ଝରି
ଅତଲ ଦୀନତାର
ଶୂନ୍ୟ ଉଠେ ଭରି
ପତନ ବ୍ୟଥା ମାଝେ
ଚେତନା ଆସି ବାଜେ
ବିରୋଧ କୋଲାହଲେ
ଗଭୀର ତବ ବାନୀ

—ରବୀନ୍ଦ୍ର ନାଥ—

ପ୍ରାଚୀନ ବଙ୍ଗଳାର ମିଷ୍ଟିକ୍ କାବ୍ୟ ବିଚାରରେ ଏହି ରସକୁ ଅଧିକ ପରିମାଣରେ ଉପଭୋଗ କରିବୁଁ । ତଥାପି ମନେ ରଖିବାକୁ ହେବ ଦୁଇଜାତିର କାବ୍ୟର ଇଙ୍ଗିତ ହିଁ ସେହି ଊର୍ଦ୍ଧ୍ୱଲୋକ ଦିଗକୁ, ଯେଉଁଠାରେ ଆକାରର ବନ୍ଧନ ଆଉ ରହେ ନାହିଁ ।

ବଙ୍ଗଳା ସାହିତ୍ୟର ଇତିହାସ ଧାରାରେ କେତୋଟି କାବ୍ୟ-ରସଗୋଷ୍ଠୀର ବିଚାର କଲେ, ବଙ୍ଗଳା କାବ୍ୟର ମିଷ୍ଟିକ୍ ଧାରାର ମୋଟାମୋଟି ପରିଚୟ ମିଳିବ । ବ୍ୟକ୍ତିଗତ ପ୍ରତିଭାର ଯେଉଁ ନବ ନବ ବୈଚିତ୍ର୍ୟ ରହିଛି ତାହା ଅଳ୍ପ ପରିସରରେ ବିଚାର୍ଯ୍ୟ ନୁହେଁ । ତଥାପି କିଛିଦୂର ଅଗ୍ରସର ହେବା ପରେ ଗୋଷ୍ଠୀ ବିଚାରର ମାପକାଠି ଆଉ ଚଳିବ ନାହିଁ । ସେହି ଅଂଶରେ ଆମ୍ଭେମାନେ ଗୋଟିଏ ଦୁଇଟି ସାର୍ଥକ କବିକୃତିର କେବଳ ଅନୁଶୀଳନ ହିଁ କରିବୁଁ ।

"ହିଁଆଲି" (ଧନ୍ଦା) ନିଶ୍ଚୟ କାବ୍ୟ ନୁହେଁ ଏବଂ ମିଷ୍ଟିକ କାବ୍ୟ ମଧ୍ୟ "ହିଁଆଲି" (ଧନ୍ଦା) ନୁହେଁ । ଦଶମଠାରୁ ଦ୍ୱାଦଶ ଶତାବ୍ଦୀ ମଧ୍ୟରେ ପ୍ରାଚୀନତମ ବଙ୍ଗଳା ସାହିତ୍ୟର ନିଦର୍ଶନ ଚର୍ଯ୍ୟାପଦଗୁଡ଼ିକ "ହିଁଆଲି" (ଧନ୍ଦା) ଜାଣିପଡ଼ୁ । ଏଗୁଡ଼ିକର ଭାଷା 'ସନ୍ଧ୍ୟା', ଭାବ-ବିଶେଷ ସାଧନ ମାର୍ଗର । ପଦକାର କହିଛନ୍ତି, ଏହାର ତାତ୍ପର୍ଯ୍ୟ କୋଟିକରେ ଏକଜଣର ହୃଦୟରେ ପ୍ରବେଶ କରେ । "କୋଟି ମାଝେ ଏକୁ ହିଅହି ସମାଇଉ ।" ତଥାପି ବିଶୁଦ୍ଧ ମିଷ୍ଟିକ୍ କାବ୍ୟର କିଛି କିଛି ଲକ୍ଷଣ ସ୍ଥୂଳଭାବେ ଏବଂ ସେହିହେତୁ ପ୍ରକଟ ଭାବରେ ଏଥିରେ ବର୍ତ୍ତମାନ । ଯେପରି ଧରାଯାଉ ପରସ୍ପର ବିରୋଧୀ କଥାର ସମାହାରରୂପର ଭାଷାରେ ଅରୂପକୁ, ସୀମାର ଭାଷାରେ ଅସୀମକୁ ଧାରଣ କରିବାକୁ ହେଲେ ଏପରି ସମାବେଶ ଅବଶ୍ୟମ୍ଭାବୀ । ଉପନିଷଦର ଭାଷାରେ "ଯେ ଦୂରରେ ଅଛନ୍ତି, ପୁଣି ନିକଟରେ ଅଛନ୍ତି, ସେ ଚାଲୁଛନ୍ତି ଅଥଚ ଚାଲୁନାହାନ୍ତି," କମ୍ବା ଉଦ୍ଧନାଥଙ୍କର

"ତୋମାର ଆଲୋସ୍ନୁ ନାଇ ତୋ ଘୁସ୍ନା," "ତବ ନୀରବ ବାନୀ ହୃଦୟୁ ତଲେ," ଇତ୍ୟାଦି ତାର ପ୍ରମାଣ । ଚର୍ଯ୍ୟାପଦରୁ ଏହାର ଗୋଟିଏ ଦୁଇଟି ଉଦାହରଣ ଦିଆହେଉ ।

ଦିବସଇ ବହୁଡ଼ୀ କାଉଇ ଡରେ ଭାଇ
ରାତି ଭଇଲେ କାମରୁ ଜାଇ
କିମ୍ବା
ବାନ୍ଧି ସୁଆ ଜମ କେଲି କରଇ
କିମ୍ବା
ଏ ବଲଦ ବିଆଏଲ ଗବିୟା ବାଝେଁ ।

ବିରୁଦ୍ଧ କଥାର ସମନ୍ୱୟ ପ୍ରଚଳିତ ସଂସ୍କାରର ଜଗଦ୍ଦଳଟାକୁ ଧ୍ୱଂସ କରିବା ବ୍ୟାପାରରେ ଯେମିତି ସହାୟକ ସେମିତି ବହୁ ବୈଚିତ୍ର୍ୟର ମଧ୍ୟରେ ଐକ୍ୟ ସନ୍ଧାନ-ମିଷ୍ଟିସିଜମର ଏହି ମୂଳତତ୍ତ୍ୱଟିକୁ ପ୍ରକାଶିତ କରେ ।

ଏହାଛଡ଼ା ଏଥିରେ ଏକପ୍ରକାର ସଂସାରର ଅସାରତ୍ୱ ପ୍ରକାଶ କରାହୋଇଛି, ଯାହା କେବଳମାତ୍ର ନୀତି, ବାକ୍ୟପରି ଶୁଣାଯାଏନାହିଁ । ସାଧନ ମାର୍ଗର ଯେଉଁସବୁ ବିଶିଷ୍ଟ ବାକ୍ୟାବଳୀ ବା ଶବ୍ଦାବଳୀ ଅଛି ତାହା ଏ ଦେଶର ବହୁକାଳର ଐତିହ୍ୟ ଉପରେ ପ୍ରତିଷ୍ଠିତ । ଜନସାଧାରଣର ସେ ସବୁ ବାକ୍ୟ ଏବଂ ଶବ୍ଦ ସମ୍ପର୍କରେ ଗଭୀର ସହୃଦୟତା ଅଛି । ମହାସୁଖ, ମନପବନ ଭବନଦୀ, ଏଗୁଡ଼ିକର ଉଲ୍ଲେଖ ମାତ୍ରେ ହିଁ ଏ ଦେଶର ଜନସାଧାରଣର ମନ ଗୋଟିଏ ସହଜ ଦାର୍ଶନିକ ଚେତନାରେ ଉଦ୍‌ବୁଦ୍ଧ ହୋଇ-ଉଠେ । ଗଭୀର ଉପଲବ୍‌ଧିର କଥାଗୁଡ଼ିକ ମଧ୍ୟ ଅତ୍ୟନ୍ତ ସହଜ ଭାଷାରେ, ଅବଲୀଳାରେ ବ୍ୟକ୍ତ ହୋଇଅଛି । ଯଥା :—

"ଜୀବନ୍ତେ ମଇଲେ ନାହିଁ ବିଶେଷ ।"

କିମ୍ବା

"ଘୁମଇନ ଚେବଇ ସପର ବଣ୍ଣଗା
ସହଜ ନଦାଲୁ କାହ୍ନି ଲ ଲଙ୍ଗା
ଚେଅନ ନ ବେଅନ ଭର ନଦ ଗେଲା
ସକଲ ମୁକଲ କର ଶୁହେ ସୁତେଲା ।"

ନିମ୍ନଲିଖିତ ପଦଟିରେ ଗଭୀର ମରମୀ ଉପଲବ୍ଧି ଉତ୍କୃଷ୍ଟ କାବ୍ୟରୂପ ଲାଭ କରିଅଛି ।—

ଅଦ୍‌ଦଅ ଚିତ୍ତତରୁ ଅରହ ଗଭ ତହୁ ଅନେ ବି ତଥାର
କରୁଣା ଫୁଲ୍ଲି ଫଲ ଧରଇ ନାଉ ପରିତ ଉଆର ।
ସୁନ ତରୁବର ଫୁଲ୍ଲି ଅଉ କରୁଣା ବିବହ ବିଚିତ୍ର
ତନ୍ତ୍ର ଆଲମ୍ବ ଜୋ କରଇ ତସୁ ପଡ଼ି ଭବାଇ ବାହ
ଏକ୍‌କେମ୍ବି ଏକ୍‌କେବ ତରୁ ତେଁ କାରନେ ଫଲ ଏକ୍‌କ
ଏ ଅଭିନ ଜୋ ମୁନଇ ସୋ ଭବ ନିବଲ ବି ମୁକ୍‌କ ।

ପ୍ରାଚୀନ ବଙ୍ଗଳା ସାହିତ୍ୟର ଗୋଟିଏ ମୂଳଧାରା ବୈଷ୍ଣବ କାବ୍ୟ । ଖ୍ରୀଷ୍ଟ ଦ୍ୱାଦଶ ଶତାବ୍ଦୀର ଶେଷ ଅଂଶଠାରୁ ଊନବିଂଶ ଶତାବ୍ଦୀରେ କୋବିଓ୍ୟାଲାମାନଙ୍କ ଶେଷ ଯୁଗ ପର୍ଯ୍ୟନ୍ତ ଏହି ଧାରାଟି ପ୍ରବାହିତ । ରାଧାକୃଷ୍ଣଙ୍କର କାହାଣୀଟି ସିମ୍ବୋଲିକ୍ । କୃଷ୍ଣ ସଚ୍ଚିଦାନନ୍ଦମୟ ଭଗବାନ । ରାଧା ତାଙ୍କର ଆନନ୍ଦାଂଶର ହ୍ଲାଦିନୀ ଶକ୍ତି । ରାଧାକୃଷ୍ଣଙ୍କର ପ୍ରେମ ଅପ୍ରାକୃତ । ସେଥିରେ କାମଗନ୍ଧ ନାହିଁ । ରାଧାକୃଷ୍ଣ, ବୃନ୍ଦାବନ, ଦେହମନ୍ଦିର ସବୁଗୁଡ଼ିକ ହିଁ ପ୍ରତୀକ । ବୈଷ୍ଣବ କାବ୍ୟର ମରମୀ ଧର୍ମ ସ୍ୱୟଂସମ୍ପୂର୍ଣ୍ଣ ନୁହେଁ । ବୈଷ୍ଣବଧର୍ମଦର୍ଶନର ସଂସ୍କାରବ୍ୟତୀତ ତାହାର ଉପଲବ୍ଧି ସମ୍ଭବ ନୁହେଁ । ସାଧାରଣ ଲୋକ ସେହି କାବ୍ୟ ପାଠରେ ପ୍ରାକୃତପ୍ରେମର ସ୍ୱାଦ ପାଏ । ଏହି ସ୍ୱାଦ ପ୍ରବଳ ହେବାର ବିଶେଷ କାରଣ ବୈଷ୍ଣବ ସାହିତ୍ୟରେ ଭଗବାନଙ୍କର ଐଶ୍ୱର୍ଯ୍ୟକୁ ଅଙ୍ଗୀକାର କରାହୋଇନାହିଁ ।

ପ୍ରାକ୍‌ଚୈତନ୍ୟ ବୈଷ୍ଣବ ସାହିତ୍ୟରେ ବିଦ୍ୟାପତିଙ୍କର ପଦରେ ଏହି ଐଶ୍ୱର୍ଯ୍ୟ ସ୍ୱୀକୃତ ହୋଇଛି, ଫଳରେ ଭୁଲ ହେବାର ଆଶଙ୍କା ନାହିଁ ।

"ତୁହୁଁ ଜଗତ ତାରନ ଦୀନଦୟାମୟୀ,
ଅତଏ ତୋହାରି ବିଶୋୟାସା !

ପଦଟି ଯେ ଭଗବାନଙ୍କୁ ଉଦ୍ଦେଶ୍ୟ କରି ଲିଖିତ ସେଥିରେ ସଂଶୟ ହୁଏନାହିଁ । କିନ୍ତୁ ଏହିସବୁ ପ୍ରାର୍ଥନାର ପଦଗୁଡ଼ିକରେ ସେପରି ସୂକ୍ଷ୍ମ ବ୍ୟଞ୍ଜନା ନାହିଁ । ସହଜ ସଂସ୍କାରମୟ ଭକ୍ତିକୁ ପ୍ରାମାଣ୍ୟ କରି ରସ ସୃଷ୍ଟି କରାହୋଇଅଛି, ଏଥିରେ ଅସହାୟ ମନୁଷ୍ୟର କାତରତାରେ ମାନବିକ କରୁଣା ଦିଗଟା ପ୍ରବଳ ହୋଇଥାଏ । କିନ୍ତୁ ବୈଷ୍ଣବ କାବ୍ୟ ସମଗ୍ରତାରେ ବିଚାର କଲେ ଏହାର ଅଲୌକିକ ବ୍ୟଞ୍ଜନା ଏଡ଼ାଇ ଯିବା କଷ୍ଟକର ବ୍ୟାପାର । ରସିକ ସମାଲୋଚକ କାଳିଦାସ ରାୟ କହିଅଛନ୍ତି—"ଇହାର ମଧ୍ୟେ ଯେ ଆତ୍ମସତ୍ତ୍ୱବିଲୋପ, ସର୍ବସ୍ୱ ବିସର୍ଜନ, ସର୍ବସଂସ୍କାର ମୁକ୍ତି, ସକଲ ବନ୍ଧନ ଛେଦନ, ଦୈତ୍ୟ ଭାବେର ବିଲୋପ, ସର୍ବ ବାଧାବିଘ୍ନ ବିଜୟ, ବାହ୍ୟଜ୍ଞାନ ଶୂନ୍ୟତା ଇତ୍ୟାଦିର ଭାବ ଆଛେ; ତାହା ସାଧାରନ ଆଦିରସେର ରଚନା ହଇତେ ଏଗୁଲିକେ ଅନେକ ଊର୍ଦ୍ଧ୍ୱେ ତୁଲିୟା ଇହାର ଉପାଦାନ ଉପକରନ ଗୁଲିକେଓ ଏକଟି ଲୋକୋତ୍ତରତାର ମହିମାୟ ମଣ୍ଡିତ କରିୟାଛେ ।"

ଅଭିସାରର ଦୁର୍ଗମ ପଥ, ପ୍ରେମର ବିରହ ସର୍ବସ୍ୱତା, ବିଷାମୃତର ସମନ୍ୱୟ, ଏହିସବୁ ସ୍ପଷ୍ଟତଃ ଲୋକୋତ୍ତରତାର ବ୍ୟଞ୍ଜନା ଦିଏ :—

ନମେ ଦୁଧ୍ ଦିୟା ଏକନ କରିୟା ଐଛନ କାନୁର ଲେହା ।
କମ୍ବା

କ୍ଷୁରେର ଉପରେ ରାଧାର ବସତି ନାଡ଼ିତେ କାଟେ ଦେହ
କମ୍ପ

କାନୁର ପୀରିତି ବଲିତେ ବଲିତେ ବୁକେର ପାଞ୍ଜର ଫାଟେ
ଶଙ୍ଖ ବନିକେର କରାତ୍ ଯେମନ ଆସିତେ ଯାଇତେ କାଟେ ।

ବୈଷ୍ଣବ କାବ୍ୟରେ initiated କାବ୍ୟରସର ଉତ୍କୃଷ୍ଟ ପରିଣତି ଛଡ଼ା ରୂପର ସୂକ୍ଷ୍ମ ମାର୍ଜନା ମଧ୍ୟ ଏଥିରେ ରହିଅଛି । ଫଳତଃ କୀର୍ତ୍ତନୀୟାର "ଆଁଖର"ର ସାହାଯ୍ୟ ଏବଂ ବୈଷ୍ଣବ ଦର୍ଶନ ଅନୁଶୀଳନ ବ୍ୟତିରେକ ସେ କାବ୍ୟର ସୂକ୍ଷ୍ମ ମିଷ୍ଟିକ ବ୍ୟଞ୍ଜନା ହୃଦୟଙ୍ଗମ କରିବା କଥା ନୁହେଁ । ବୈଷ୍ଣବ କାବ୍ୟଗୁଡ଼ିକରେ ସ୍ୱୟଂ ସମ୍ପୂର୍ଣ୍ଣ ଦେଶ କାଳର ସଂସ୍କାରମୁକ୍ତ ମିଷ୍ଟିକ ବ୍ୟଞ୍ଜନାରେ ମଧ୍ୟ ଅସଦ୍‌ଭାବ ନାହିଁ । ପ୍ରାକ୍ ଚୈତନ୍ୟ ବୈଷ୍ଣବ କାବ୍ୟ ସେତେବେଳେ ମଧ୍ୟ ଗୋଷ୍ଠୀ-ସାହିତ୍ୟ ହୋଇ ପାରି ନ ଥିଲା । ସେହି ଯୁଗର ଚଣ୍ଡୀଦାସଙ୍କର କାବ୍ୟରୁ ଗୋଟିଏ ଉଦାହରଣ ଦିଆଯାଉ ।—

"ମରମ ନା ଜାନେ ଧରମ୍ ବାଖାନେ
ଏମନ ଆଛୟେ ଯାରା
କାଜ୍ ନାଇ ସଖୀ ତାଦେର କଥାୟ
ବାହିରେ ରହୁନ୍ ତାରା
ଆମାର ବାହିର ଦୁଆରେ କବାଟ ଲେଗେଛେ
ଭିତର ଦୁଆର ଖୋଲା
ତୋରା ନିସାଡ଼ା ହଇୟା ଆୟଲୋ ସଜନୀ
ଆନ୍ଧାର ପେରିୟେ ଆଲୋ ।
ଆଲୋର ଭିତରେ କାଲଟି ଆଛେ
ବୈଷ୍ଣବ ରୟେଛେ ତଥା

ସେ ଦେଶର କଥା          ଏଦେଶେ କହିଲେ
ମରମେ ବାଜବେ ବ୍ୟଥା ।"

ଏହି Mystic ପଦ୍ଧତିଟି ଯୁଗବ୍ୟାପୀ ଐତିହ୍ୟର ଫଳରେ ଭାରତବର୍ଷରେ ଲୋକଙ୍କ ନିକଟରେ ଅତ୍ୟନ୍ତ ସହଜ ବୋଧ ହୋଇ ଉଠିଛି । ଗୀତାର—"ଯା ନିଶା ସର୍ବ ଭୂତାନାମ୍—" ଇତ୍ୟାଦି ଏବଂ ଉପନିଷଦ୍‌ର "ପରାଙ୍ମୁଖାନ" ଇତ୍ୟାଦି ଶ୍ଳୋକରେ ଏହାର ତତ୍ତ୍ୱରୂପ ଅଛି । ମନେ ରଖିବାକୁ ହେବ ଯେ ଭାରତରେ ନାନା ଶାଖାର ନିଗୂଢ଼ ସାଧନ ପନ୍ଥାଗୁଡ଼ିକର ଯେଉଁ ବ୍ୟାପକ ଆବେଦନ ଘଟିଥିଲା ତାହା ଭାରତର ଶିକ୍ଷା ସଂସ୍କୃତି ଇତ୍ୟାଦିର ନିଜସ୍ୱ ବୈଶିଷ୍ଟ୍ୟ ହେତୁ ; ଅନ୍ୟତ୍ର ଏପରି ସୂକ୍ଷ୍ମ ବ୍ୟାପାର ଏପରି ସାର୍ବଜନୀନ ହୋଇପାରିନାହିଁ । କାବ୍ୟରେ ସଙ୍ଗୀତ ଧର୍ମ ମଧ୍ୟ ଏହାର ଗୋଟିଏ କାରଣ । ବୈଷ୍ଣବ କାବ୍ୟର ସହଜ ଟୀକା କରିଛନ୍ତି କୀର୍ତ୍ତନୀୟାମାନେ । ସେମାନଙ୍କର 'ଆଁଖର' ସହଯୋଗରେ 'ବାଉଲ' ଗୀତ ଗାଇ ଦୁଆର ଦୁଆର ଯାଇ ଗୃହସ୍ଥମାନଙ୍କୁ ମତାଇଛନ୍ତି । ଅମର୍ତ୍ତ୍ୟ ଲୋକର ସମ୍ବାଦ ମର୍ତ୍ତ୍ୟ ଲୋକକୁ ନେଇ ଯିବାର ଏପରି ମାଧ୍ୟମ (Medium) ବୋଧହୁଏ ଆଜି କେଉଁଠାରେ ନାହିଁ ।

କିନ୍ତୁ ବଙ୍ଗଳା ସାହିତ୍ୟର ଅପର ବୃହତ୍ ଶାଖା, ଯାହାର ବିସ୍ତାର ବୈଷ୍ଣବ ସାହିତ୍ୟ ପରି ବହୁ ଶତାବ୍ଦୀବ୍ୟାପି, ସେହି ମଙ୍ଗଳ କାବ୍ୟର ଦେବତାଗଣ ଅନେକକ୍ଷେତ୍ର ମାନବ ଠାରୁ ମଧ୍ୟ ଅଧମ । ନିଜ ନିଜର ପୂଜା ପ୍ରଚାର ପାଇଁ ସେମାନେ ଯେଉଁ ସବୁ ଛଳନାର ଆଶ୍ରୟ ନେଇଅଛନ୍ତି ତାହା ମର୍ତ୍ତ୍ୟର ଲୋକଙ୍କୁ ଅମର୍ତ୍ତ୍ୟ ଆନନ୍ଦ ଲୋକକୁ ନେଇଯିବାର ଉପାୟ ନୁହେଁ । ବୈଷ୍ଣବ ପ୍ରେମଧର୍ମରେ "କାମଗନ୍ଧ" ନାହିଁ । କିନ୍ତୁ ମଙ୍ଗଳ କାବ୍ୟର ଭକ୍ତ ସକାମ କାମ୍ୟ ସେଠାରେ ମନୁଷ୍ୟର ଭୟ ଲୋଭ-କାମନାର ପ୍ରାପ୍ତ ଏକମାତ୍ର ଜଗତ ଅଛି ।

ତଥାପି ଦୀର୍ଘକାଳ ପର୍ଯ୍ୟନ୍ତ ଏହି ମଙ୍ଗଳ କାବ୍ୟଗୁଡ଼ିକ କୌଣସି ରୂପ ବଙ୍ଗାଳୀମାନଙ୍କର ଭକ୍ତିପିପାସା ଚରିତାର୍ଥ କରିଅଛି । ସଂସ୍କାରାଚ୍ଛନ୍ନ ମଣିଷ ଦେବୀ ଲୀଳାର ଯୁକ୍ତିଯୁକ୍ତତାର ବିଚାର କଥା ଭାବେ ନାହିଁ । ସଂସ୍କାରମୟ ଭକ୍ତ ହେଲେ ମଧ୍ୟ ଏହି କାବ୍ୟରେ ଭକ୍ତି-ରସ ଖାଣ୍ଟି । ମଣିଷର କାତରତା ନସଠି ଉଦ୍ଦିଷ୍ଟ ଦେବତାର ଅଲୌକିକତ୍ୱକୁ ପ୍ରତିଷ୍ଠିତ କରିଛି । ସ୍ତୋତ୍ରଜାତୀୟ ପଦରେ କେଉଁଠି କେଉଁଠି ଦେବତାର ଗୁଣ କୀର୍ତ୍ତନ ପ୍ରସଙ୍ଗରେ ବିଶେଷଣ ଉପରେ ବିଶେଷଣ ସଂଯୋଜିତ ହୋଇଅଛି । ଗତାନୁଗତିକତା ହେତୁ ସେସବୁ ରସିକ ଚିତ୍ତରେ ସ୍ପନ୍ଦନ ଜଗାଇ ପାରେ ନାହିଁ । କିନ୍ତୁ ସେହି ସବୁ କୃତ୍ରିମତା ବର୍ଜିତ ଗୋଟିଏ ସହଜ ଭକ୍ତର ଦେବୀସ୍ତୋତ୍ର ଗ୍ରହଣ କରାଯାଉ । ଏହି ଜାତୀୟ ପଦର ବହୁଳ ସଦ୍ଭାବ ମଙ୍ଗଳ କାବ୍ୟ ଗୁଡ଼ିକରେ ଅଛି :—

"ଶରନ ଲଇନୁ ଜଗତ ଜନନୀ ଓ ରାଙ୍ଗା ଚରନେ ତୋର
ଭବ ଜଲଧିତେ ଅନୁକୂଲ୍ ହଇତେ କେ ଆର୍ ଆଛୟେ ମୋର ।
ଦୁର୍‌ଧ କଣ୍ଠ ଶିଶୁଦୋଷ କରେ ରୋଷ ନା କର ଯେ ମାୟେ ।
ଯଦିବା ରୁଷିବେ ପଡ଼ିୟା କାନ୍ଦିବ ଧରିୟା ଓରାଙ୍ଗ ପାୟେ ।
ହରି ହର ବ୍ରହ୍ମା ଯେ ପଦ ପୂଜୟେ ତାହି କି ବଲିବ ଆମି
ବିପଦ ସାଗରେ ତନୟ ଫୁକାରେ ବୁଝିୟା ଯା କର ତୁମି ।"

('ସହଦେବ ଚକ୍ରବର୍ତ୍ତୀଙ୍କର ଧର୍ମ ମଙ୍ଗଲ' )

ଏହାଛଡ଼ା ଏହି ମଙ୍ଗଳ କାବ୍ୟଗୁଡ଼ିକର ନିର୍ଯ୍ୟାସରୂପେ ପରବର୍ତ୍ତୀ କାଳରେ ଶାକ୍ତ ଗୀତାବଳୀର ଆବିର୍ଭାବ । ସେଗୁଡ଼ିକର ମିଷ୍ଟିକ ଆବେଦନ ଅସ୍ୱୀକାର କରାଯାଏ ନାହିଁ । ତହିଁରେ ଦେଶର ସଂସ୍କାରମୟ ଭକ୍ତି ରସ ଅଛି, ଗୋଟିଏ ଗୂଢ଼ ସାଧନ ପଦ୍ଧତିର ରୂପ

ଏବଂ ତାହା ପ୍ରସ୍ତୁତ କରିବା ପାଇଁ ସେହି ଗୋଷ୍ଠୀର ନିଜସ୍ୱ Patent ଶବ୍ଦାବଳୀ ଅଛି ଏବଂ ଅସୀମର ରହସ୍ୟମୟ ରୂପ ଧ୍ୟାନ ଅପେକ୍ଷା ଗୋଟିଏ ଆକାର ବିଶିଷ୍ଟ ଗୋଷ୍ଠୀଗତ ଦେବତାଙ୍କୁ ସ୍ୱୀକାର କରି ଭକ୍ତର ଭକ୍ତିରସ ଚରିତାର୍ଥ ହୋଇଅଛି । ତଥାପି ସଂସ୍କାରମୁକ୍ତ ସକଳ ଦେଶର ସହୃଦୟ ପାଠକ ସେହି କାବ୍ୟ ପାଠ କରି ଆଧାତ୍ମ୍ୟ ରହସ୍ୟମୟ ବ୍ୟଞ୍ଜନା ଉପଲବ୍‌ଧି କରିବେ ।

ଶାକ୍ତ ପଦଗୁଡ଼ିକରେ ଅଦ୍ଭୁତ, ବୀର, ରୌଦ୍ର, ଭୟାନକ ଏବଂ ବିଭତ୍ସ ରସର ପ୍ରକାଶ ଅଛି । କାଳୀ ନୃମୁଣ୍ଡମାଳିନୀ ଦିଗ୍‌ବସନା, ରୁଧୀର ପାନରେ ଉନ୍ମତ୍ତ । ସେହି ବିଶ୍ୱେଷଣୀଙ୍କୁ ହିଁ ଭକ୍ତମାନେ ମାତୃ-ରୂପେ ଭଜନ କରିଅଛନ୍ତି । ଏହି କାବ୍ୟରେ ସୌନ୍ଦର୍ଯ୍ୟ ଏବଂ ଭୟଙ୍କରତା, ନିଷ୍ଠୁରତା ଏବଂ କୋମଳତା, ଐଶ୍ୱର୍ଯ୍ୟ ଏବଂ ମାଧୁର୍ଯ୍ୟର ଅପୂର୍ବ ସମନ୍ୱୟ ହୋଇଅଛି । ସେଥିପାଇଁ ଏହି କାବ୍ୟ ପାଠକର ଲୌକିକ ସଂସ୍କାର ମୁକ୍ତ ହେବାକୁ ବିଳେମାଏ ବିଳମ୍ବ ହୁଏ ନାହିଁ । ରାମପ୍ରସାଦଙ୍କର କାବ୍ୟରେ ଏହାର ଶ୍ରେଷ୍ଠ ଅଭିବ୍ୟକ୍ତି :-

"ତଳୟା ତଳୟା କେ ଆସେ
ଗଳିତ ଚିକୁର ଆସବ ଆବେଶେ
ବାମାରନେ ଦ୍ରୁତ ଗତି ଚଲେ ଦାବାନଲେ
ଧରି କରତଲ ଗଜଗରାସେ ।
କେରେ କାଲୀର ଶରୀରେ ରୁଧୀର ଶୋଭିଛେ
କାଳିନ୍ଦୀର ଜଲେ କିଂଶୁଭାସେ ।
କେରେ ନୀଲ କମଲ ଶ୍ରୀମୁଖ ମଣ୍ଡଲ
ଅର୍ଦ୍ଧ ଚନ୍ଦ୍ର ଭାଲେ ପ୍ରକାଶେ ।
କେରେ ନୀଲକାନ୍ତମଣି ନିତ୍ୟାନ୍ତ
ନଖର ନିକର ତିମିର ନାଶେ,

କେତେ ରୂପେର ଛଟାୟ୍ ତଡ଼ିତ ଘଟାୟ୍
ଘନ ଘୋର ରବ ଉଠେ ଆକାଶେ ।
ବିଶ୍ୱ ଶୁଚଡାୟ୍, ସବାର ହୃଦୟ୍
ଥର ଥର ଥରକାଁପେ ତାସେ ।
ମାଗୋ କୋପ କର ଦୂର ଚଲ ନିଜପୁର
ନିବେଦେ ଶ୍ରୀରାମ ପ୍ରସାଦ ଦାସେ ।

ବାତ୍ସଲ୍ୟ ରସ ଏହି କାବ୍ୟର ମୁଖ୍ୟ ସାଧନ ରସ । କିନ୍ତୁ ଶେଷ ପର୍ଯ୍ୟନ୍ତ ସମସ୍ତ ଗୋଟିଏ ପରମ ଶାନ୍ତରେ ପରମ ନିବୃତ୍ତିରେ ଯାଇ ସ୍ଥିତିଲାଭ କରିଅଛି । ବୈଚିତ୍ର୍ୟ ମଧ୍ୟରେ ଗୋଟିଏକୁ ପ୍ରତ୍ୟକ୍ଷ କଲେ ଏପରି ଅସୀମ ଶାନ୍ତି ବିପୁଳ ବିରକ୍ତି ସମ୍ଭବ ହୁଏ ।

ଏମନ ଦିନ କି ହବେ ତାରା
ଯବେ ତାରା ତାରା ତାରା ବଲେ ଦୁ'ନୟ୍ନେ ପଡ଼ବେ ଧାରା,
ହୃଦି ପଦ୍ମ ଉଠ୍‌ବେ ଫୁଟେ ମନେର ଅନ୍ଧାର ଯାବେ ଛୁଟେ
ତଖନ ଧରାତଲେ ପଡ଼ବ ଲୁଟେ ତାରା ବଲେ ହବ ସାରା
ତ୍ୟେଜିବ ସବ ଭେଦାଭେଦ୍, ଘୁଚେ ଯାବେ ମନେର ଖେଦ,
ଓରେ ଶତ ଶତ ସତ୍ୟ ବେଦ, ତାରା ଆମାର ନିରାକାରା
ଶ୍ରୀରାମ ପ୍ରସାଦ ବଟେ ମା ବିରାଜେ ସର୍ବ ଘଟେ,
ଓରେ, ଆଁଖି ଅନ୍ଧ ଦେଖ୍ ମାକେ ତିମିରେ ତିମିର୍ ହରା ।

ବଙ୍ଗଳାର "ବାଉଲ" ଗୀତର ଧାରାଟି ମଧ୍ୟ ବହୁତ ବ୍ୟାପକ । ଏହି ଗୀତ ସଙ୍ଗେ ବଙ୍ଗଳା ନାଗରିକ ଯୋଗ ଅଛି । ଏହି ଧାରାର ପ୍ରସ୍ତାସଟି ମଧ୍ୟ ଗୋଷ୍ଠୀଗତ । ସାଧନ ବିଦ୍ୟା ମଧ୍ୟ ଗୁରୁମୁଖୀ, ଭାଷା ମଧ୍ୟ ଅନେକ ମାତ୍ରାରେ ରହସ୍ୟ ମୟ । ଅର୍ଥାତ୍ ଏହି ସମ୍ପ୍ରଦାୟର ସାଧନା ସଙ୍ଗେ ପରିଚୟ ନ ଥିଲେ ଅନେକ କ୍ଷେତ୍ରରେ ମର୍ମାର୍ଥ ଉପଲବ୍ଧି କରାଯାଏନାହିଁ । କ୍ଷିତିମୋହନ ସେନଙ୍କ ଜଣେ ସ୍ମରଣ କବି

କହିଥିଲେ—"ଏଣ୍ଡ ସବ୍ ବାଣୀ ସାହିତ୍ୟ ରସେର ଆସ୍ୱାଦନେର ଜନ୍ୟ ନୟ । ଇହା ସାଧନାର ଜନ୍ୟ । ହୟତ ଇହାତେ ସାହିତ୍ୟ ରସ ଆଛେ । କିନ୍ତୁ ତାହାତ ମୁଖ୍ୟ ଲକ୍ଷ୍ୟ ନହେ । ତାଇ ଇହା ପ୍ରଚାର କରିନା ।"

ଚାରଣ କବିମାନେ ଜାତି, ଶାସ୍ତ୍ର ମାନନ୍ତି ନାହିଁ । ମାନବତତ୍ତ୍ୱ ସେମାନଙ୍କର ଏକମାତ୍ର ଲକ୍ଷ୍ୟ । ସେହି ମନର ମଣିଷର ସନ୍ଧାନ ହିଁ ସେମାନଙ୍କର ସାଧନା ।

ଆମାର୍ ମନେର ମାନୁଷ୍ ଯେରେ ଆମି କୋଥାୟ ପାବ
ତାରେ ?"

"ବାଉଲ" କବିମାନଙ୍କ ଏହି ଧର୍ମ ତାଙ୍କର ସାହିତ୍ୟକୁ ଗଣ୍ଡିମୁକ୍ତ କରିଅଛି । ଯେଉଁଠାରେ ସାଧନ ପଦ୍ଧତିର କଥା ନାହିଁ କେବଳ ଉପଲବ୍ଧିର କଥା ଅଛି, ସେଇଠାରେ ଏହି କାବ୍ୟ ଆଧୁନିକ ମିଷ୍ଟିକ୍ କାବ୍ୟ ସଙ୍ଗେ ପ୍ରତିଯୋଗିତା କରିପାରେ ।

ଊନବିଂଶ ଶତାବ୍ଦୀର ଆରମ୍ଭରୁ ଅନେକଗୁଡ଼ିଏ କାରଣ ଯୋଗୁଁ ବଙ୍ଗଳା ସାହିତ୍ୟର ପ୍ରକୃତିର ପରିବର୍ତ୍ତନ ଘଟିଅଛି । ପାଶ୍ଚାତ୍ୟର ପ୍ରବଳ ପ୍ରଭାବରେ ବ୍ୟକ୍ତିଚେତନା କ୍ରମଶ ଜାଗ୍ରତ ହେଲା । ଗୋଷ୍ଠୀ ସାହିତ୍ୟର ଧାରାର ଅବସାନ ଘଟିଲା । ସାହିତ୍ୟିକମାନେ ଏହା ପୂର୍ବରୁ ରାଜା ଜମିଦାରମାନଙ୍କର ପୃଷ୍ଠପୋଷକତାରୁ ବଞ୍ଚିତ ହୋଇ ଅନେକ ପରିମାଣରେ ଆତ୍ମନିର୍ଭରଶୀଳ ହୋଇ ଉଠିଛନ୍ତି । ୧୮୦୦ ଖ୍ରୀଷ୍ଟାବ୍ଦରେ ଫୋର୍ଟ୍ ଉଇଲୟମ୍ କଲେଜର ସ୍ଥାପନ ସଙ୍ଗେ ସଙ୍ଗେ ଯେଉଁ ଗଦ୍ୟ ସାହିତ୍ୟର ଉଦ୍‌ଭବ ଏବଂ ବିକାଶ ହେଲା, ତଦ୍ୱାରା ସାହିତ୍ୟରେ ଆବେଗବହୁଳତା ଅନେକ ପରିମାଣରେ କମି ଯାଇ ତହିଁରେ ସୁପରିକଳ୍ପନା, ଚିନ୍ତାଶୀଳତା ଓ ଯୁକ୍ତିର ପ୍ରଭାବ ପଡ଼ିଲା । ଅତି ମାତ୍ରାରେ ଆତ୍ମସଚେତନ କବିଗଣ ଯେଉଁ ମିଷ୍ଟିକ୍ ସାହିତ୍ୟ

ସୃଷ୍ଟି କଲେ ତଦ୍ଦ୍ୱାରା ରୋମାଣ୍ଟିକ ଧର୍ମ ପ୍ରବଳ ହେଲା । ରବୀନ୍ଦ୍ର-ନାଥଙ୍କର ରଚନାରେ ଏହି ରୋମାଣ୍ଟିକ୍-ମିଷ୍ଟିକ୍ ସାହିତ୍ୟର ପରିପୂର୍ଣ୍ଣ ସ୍ଫୂର୍ତ୍ତି ହୋଇଅଛି । ସେ ବଙ୍ଗଳା ସାହିତ୍ୟର ପୂର୍ବକାଳ ସାଧନାକୁ ସମ୍ପୂର୍ଣ୍ଣରୂପେ ଆତ୍ମସାତ୍ କରିଥିଲେ । ବୈଷ୍ଣବ 'ବାଉଲ' ଇତ୍ୟାଦି ସବୁ ସାହିତ୍ୟ ଏବଂ ସାଧନା ରୀତିକୁ ତାଙ୍କର କାବ୍ୟ ଜୀବନରେ ଗ୍ରହଣ କରିଛନ୍ତି । ତାଙ୍କର ପ୍ରଥମ ଜୀବନର "ଭାନୁସିଂହେର ପଦାବଳୀ" ବୈଷ୍ଣବକବିପଦାବଳୀର ଅନୁକରଣ । ବାଉଲ କବିତା ସେ ଅନେକ ଲେଖିଛନ୍ତି ଅବଂ ସେହି ନାଟକଗୁଡିକରେ 'ଠାକୁର୍ଦା' ଜାଣିଥି ଚରିତ୍ରଟା ଅନେକଟା ବାଉଲଜାଣିଥି । କିନ୍ତୁ ରବୀନ୍ଦ୍ର-ନାଥଙ୍କ ପୂର୍ବରୁ ଆଉ ଜଣେ କବିଙ୍କର ନାମ ଉଲ୍ଲେଖଯୋଗ୍ୟ । ରବୀନ୍ଦ୍ରନାଥ ତାଙ୍କୁ କାବ୍ୟଗୁରୁ ବୋଲି ସ୍ୱୀକାର କରିଅଛନ୍ତି । ବିହାରୀଲାଲ ଚକ୍ରବର୍ତ୍ତୀଙ୍କର ଜୀବନକାଳ ୧୮୩୪ ଖ୍ରୀଷ୍ଟାବ୍ଦରୁ ୧୮୯୪ ପର୍ଯ୍ୟନ୍ତ ବ୍ୟାପ୍ତ ।

ବିହାରୀ ଲାଲଙ୍କର କଳ୍ପନା ଅତି ମାତ୍ରାରେ Subjective ଫଳରେ ତାଙ୍କର ଅରୂପ ରୂପକଳ୍ପନା ତାଙ୍କର ନିଜସ୍ୱ । ତାଙ୍କର ଭାଷା ଏବଂ ଛନ୍ଦର ସିମ୍ବୋଲିଜ୍‌ମ୍ ସେ ନିଜେ ସୃଷ୍ଟି କରିଛନ୍ତି । କାବ୍ୟ ମଧ୍ୟରେ ତାହା ପୂର୍ଣ୍ଣ ମାତ୍ରାରେ ବର୍ଜ୍ଜିତ ; ପାଠକକୁ ଆଉ ଅନ୍ୟ କୌଣସିର ଆଶ୍ରୟ ନେବାକୁ ହୁଏନାହିଁ । କବି ସାରଦାମଙ୍ଗଳ କାବ୍ୟରେ ସାରଦାର ଯେଉଁ ରହସ୍ୟ ଧ୍ୟାନ କରିଛନ୍ତି, ତହିଁରେ romanticର "withdrawal of the outward experience" ଏବଂ Mysticର "sublime of self confidence" ଉଭୟ ଅଛି ।

"କାୟାହୀନ ମହାଛାୟା
ବିଶ୍ୱ ବିମୋହିନୀ ମାୟା
ମେଘେ ଶଶୀ ଢାକା ରାକା ରଜନୀ ରୂପିଣୀ

ଅସୀମ କାନନ ତଲ
ବ୍ୟେପେ ଆଛେ ଅବିରଲ
ଉପରେ ଉଜଲେ ଭାନୁ ଭୂତଲେ ଯାମିନୀ ।

ଏବଂ

"ତୁମି ଲକ୍ଷୀ ସରସ୍ୱତୀ
ଆମି ବ୍ରହ୍ମାଣ୍ଡେର ପତି
ହୋକ୍‌ଗେ ଏ ବସୁମତୀ ଯାରଖୁସି ତାର ।"

ରବୀନ୍ଦ୍ରନାଥ ଅତୀତ ଭାରତର ସକଳ ସାଧନାକୁ ଆତ୍ମସାତ୍ କରିଥିଲେ । କିନ୍ତୁ ସେ ବିଶେଷ ଭାବରେ ଉପନିଷଦର ମନ୍ତ୍ରରେ ଦୀକ୍ଷିତ । ତେଣୁ ଉପନିଷଦରେ ଯେଉଁ ଅଶବ୍ଦ, ଅସ୍ପର୍ଶ, ଅରୂପ, ଅବ୍ୟୟ, ଅରସ, ଅଗନ୍ଧ, ଅବାଙ୍ମନସଗୋଚର ବ୍ରହ୍ମର ଧ୍ୟାନ ଅଛି କବିଙ୍କର Mystic ପ୍ରୟାସ ସେହି ରୂପବିବର୍ଜିତକୁ ଆଶ୍ରୟ କରି ଗଠିତ । ସେଥିପାଇଁ ତାଙ୍କର କାବ୍ୟରେ ଦେଶକାଳର ସୀମାର ଛାପ ନାହିଁ । ନିମ୍ନଲିଖିତ ପଦଟିରୁ ତାହା ବୁଝାଯିବ । ଭାଷାନ୍ତରିତ ହୋଇ ମଧ୍ୟ ଏହି ପଦଟିର ଗୌରବ କ୍ଷୁଣ୍ଣ ହୋଇ ନାହିଁ ।

"ତୋରା ଶୁନିସ୍ ନି କି ଶୁନିସ୍‌ନି ତାଁର ପାଏର୍ ଧ୍ୱନି
ଐ ଯେ ଆସେ ଆସେ ଆସେ
Have you not heard his silent steps ?
He comes, comes, ever comes.

ରବୀନ୍ଦ୍ରନାଥଙ୍କର ମିଷ୍ଟିକ୍ କାବ୍ୟରେ ରୋମାଣ୍ଟିକ୍ ଧର୍ମ ପ୍ରବଳ । ତାଙ୍କ କାବ୍ୟରେ ଅରୂପ ଅସୀମର ରହସ୍ୟମୟ ରୂପଧ୍ୟାନ ଅଛି । ଝଡ଼ରାତିରେ ଗଭୀର ନିଦା, ଗହନ ବନ, ଅତିକ୍ରମ କରି ଭଗବାନ କ୍ରମାଗତ ଭକ୍ତ ନିକଟକୁ ଆସୁଛନ୍ତି । ଏ ନିଖୁଣ ସୁନ୍ଦର

କେଉଁ ନଈ ? ଏବଂ ଗହନ ବନ କେଉଁ ବନ ଏବଂ ପବନସଖା କେବଳ ଅନ୍ତହୀନ କରୁଛନ୍ତି—

ଆଜ୍ ଝଡ଼ର ରାତେ ତୋମାର ଅଭିସାର,
ପରାନ ସଖା ବନ୍ଧୁ ହେ ଆମାର !
...	...	...
ସୁଦୂର କୋନ ନଦୀର ପାରେ
ଗହନ କୋନ ବନେର ଧାରେ
ଗଭୀର କୋନ ଅନ୍ଧକାରେ
ହତେଛୋ ତୁମି ପାର୍ ।
ପରାନ ସଖା ବନ୍ଧୁ ହେ ଆମାର୍ ।

କିନ୍ତୁ ତାଙ୍କୁ ହାତରେ ପାଇବା ସମ୍ଭବ ତ ନୁହେ । ତେଣୁ ସ୍ୱପ୍ନରେ ଭାଙ୍ଗିଗଲା—ଘରର ଅନ୍ଧାର ଆନନ୍ଦରେ କମ୍ପି ଉଠିଲା । କିନ୍ତୁ—

"ଉଠିନୁ ଯଖନ ତଖନ ଗିୟେଛୋ ଚଲେ ।"

ରବୀନ୍ଦ୍ରନାଥଙ୍କର କାବ୍ୟଜୀବନର ଗୋଟିଏ ମାତ୍ର ବୈଶିଷ୍ଟ୍ୟ (ପାଲା) ହେଉଛି ସୀମା ସଙ୍ଗରେ ଅସୀମର ମିଳନ ସାଧନାର ପ୍ରଚେଷ୍ଟା । ସେ ଅମୃତକୁ କେବଳ ମାତ୍ର ଅମର୍ତ୍ତ୍ୟ ଲୋକର ସାମଗ୍ରୀ କରି ଦେଇ ନାହାନ୍ତି, ପୃଥିବୀର ମୃତ୍ତିକା ପାତ୍ରରେ ଅମୃତ ଧାରଣର ଦୁଃସାଧ୍ୟ ପ୍ରଚେଷ୍ଟା କରିଛନ୍ତି । ତେଣୁ ଏହି ଜଗତର ବେଦନାବିରୋଧ କୋଳାହଳର ଅବସାନରୂପେ ଅମୃତର ମହାବାଣୀ କାମନା କରିଛନ୍ତି !

"ପତନ ବ୍ୟଥା ମାଝେ
ଚେତନା ଆସି ବାଜେ
ବିରୋଧ କୋଲାହଲେ
ଗଭୀର ତବ ବାଣୀ ।"

ତାଙ୍କର ଗୀତାଞ୍ଜଳୀ କାବ୍ୟରେ ପାଥେୟହୀନ କ୍ଷତଗ୍ରସ୍ତ ମଳିନ-ବେଶ ଅପମାନିତ ମଣିଷର ସେଇ ଅମୃତ ପାଇଁ ବ୍ୟାକୁଳ କାମନା ପ୍ରକାଶ ପାଇଛି—

ପାଥେୟ ଯାର ଫୁରିଯେ ଆସେ ପଥେର ମାଝଖାନେ
କ୍ଷତେର ରେଖା ଉଠେଛେ ଯାର ଫୁଟେ
ବସନଭୂଷା ମଳିନ୍ ହଲ ଧୂଲିଯ ଅପମାନେ
ଶକତି ଯାର ପଡ଼ିଛେ ଭୂୟେ ଟୁଟେ
ଢାକିଯ ଦିକ୍ ତାହାର କ୍ଷତବ୍ୟଥା
କରୁଣା ଘନ ଗଭୀର ଗୋପନତା,
ଘୁଚିଯେ ଲାଜ ଫୁଟାଓ ତାରେ ନବୀନ ଉଷା ପାନେ
ଜୁଡ଼ାଯେ ତାରେ ଆଂଧାର ସୁଧା ଜଲେ ।

ଭଗବାନଙ୍କୁ ପାଇବାକୁ ହେଲେ ସକଳ ଅହଙ୍କାର ତ୍ୟାଗ କରିବାକୁ ହେବ । ମଣିଷର ସେହି ଅହଂ ମୁକ୍ତିର ସାଧନାର ଇତିହାସ ତାଙ୍କର 'ରାଜା' ନାମକ ଆଧ୍ୟାତ୍ମିକରସର ନାଟକରେ ସୁପରିସ୍ଫୁଟ । ଗୀତାଞ୍ଜଳୀରେ ମଧ୍ୟ—

"ସକଲ ଅହଙ୍କାର ହେ ଆମାର
ଡୁବାଓ ଚୋଖେର ଜଲେ ।"

'ରାଜା' ନାଟକର ଭଗବାନଙ୍କୁ କୌଣସି ସମାଲୋଚକ ଗଣେଶ ଦେବତା ବା Democratic ଭଗବାନ କହିଛନ୍ତି । ଗୀତାଞ୍ଜଳୀରେ ମଧ୍ୟ ଏହି ତତ୍ତ୍ୱ ରୂପାୟିତ ହୋଇଛି—

ତିନି ଗେଛେନ୍ ଯେଥାଯ ମାଟି ଭେଙ୍ଗେ
କରଛେ ଚାଷା ଚାଷ—
ପାଥର ଭେଙ୍ଗେ କାଟଛେ ଯେଥାଯ ପଥ
ଖାଟଛେ ବାର ମାସ ।"

ଭଗବାନଙ୍କୁ ଉପଲବ୍ଧି କରିପାରିଲେ ଆତ୍ମପର ଭେଦ ଘୁଞ୍ଚି ଯାଏ । ବିଶ୍ୱ ଉପଲବ୍ଧିର ପରମ ପ୍ରସନ୍ନତାରେ ହିଁ ମନ ପୂରି ଯାଏ । ସମସ୍ତଙ୍କୁ ଜାଣିବା ଅର୍ଥ ସମସ୍ତଙ୍କୁ କ୍ଷମା କରିବା, ସମସ୍ତଙ୍କୁ ଅନ୍ତରରେ ଗ୍ରହଣ କରିବା । —

"ବିଶ୍ୱ ସାଥେ ଯୋଗେ ଯେଥାୟ ବିହାର
ସେଇ ଖାନେ ଯୋଗ ତୋମାର ସାଥେ ଆମାର ।

ରବୀନ୍ଦ୍ରନାଥଙ୍କର ଭଗବାନ ଐଶ୍ୱର୍ଯ୍ୟମୟ । ଗମ୍ଭୀର ମଧୁରରେ, ସୁନ୍ଦର ଭୟଙ୍କରରେ, ଆଲୁଅ ଅନ୍ଧକାରରେ, ତାଙ୍କର ବିଚିତ୍ର ପ୍ରକାଶ । କିନ୍ତୁ ରବୀନ୍ଦ୍ର କାବ୍ୟରେ ଭକ୍ତ ସଙ୍ଗେ ଭଗବାନଙ୍କର ମୂଳ ସମ୍ବନ୍ଧଟି ପ୍ରେମର । ଅଜିତ୍ ଚକ୍ରବର୍ତ୍ତୀଙ୍କ ମତରେ "ଗୀତାଞ୍ଜଳୀ ଯେଉଁ ଦେବତାର ପାୟେ ସସଂଭ୍ରମେ ଗୀତି ନିବେଦନ, ସେଖାନେ 'ଦେବତା ଜେନେ ରଇ ଦାଣ୍ଡିୟେ ଦୁହାତ ଧରିନେ' ଗୀତିମାଲ୍ୟ ବିଧୁର ଗଳାୟ ଗୀତିମାଲ୍ୟେର ଉପହାର ।" ( କାବ୍ୟ ପରିକ୍ରମା )

"ଭେବେ ଛିଲ ଚିର କାଙ୍ଗାଲ ଏଇ ଭୁବନେ
କାଙ୍ଗାଲ ମରଣେ ଜୀବନେ
ଓଗୋ ମହାରାଜ ବଡ଼ ଭୟେ ଭୟେ
ଦିନ ଶେଷେ ଏଲ ତୋମାର ଆଲୟେ
ଆଧେକ ଆସନେ ତାରେ ଡେକେ ଲୟେ
ନିଜ ମାଲା ଦିୟେ ବରିଲେ ।"

ରବୀନ୍ଦ୍ର କାବ୍ୟରେ ଭକ୍ତ ସାଧକର ସରଳ ବିଶ୍ୱାସ ଅକପଟ-ଭାଷାରେ ପ୍ରକାଶ ପାଇଛି ; ସେଥିରେ ଅରୂପର ରୂପ ଧାରଣାର ପ୍ରୟାସ ନାହିଁ, ରହସ୍ୟ ନାହିଁ, ସଂଶୟ ନାହିଁ, କେବଳ ପ୍ରାଣର ଅସୀମ ବିଶ୍ୱାସ ଅଛି ।

ତୁମି ଯଦି ବକ୍ଷମାଝେ ରହ ନିରବଧି
ତୋମାର ଆନନ୍ଦ ମୂର୍ତ୍ତି ନିତ୍ୟ ହେରେ ଯଦି
ଏ ମୁଗ୍‌ଧ ନୟନ ମୋର, ପରାନ ବଲ୍ଲଭ !
ତୋମାର କୋମଲ କାନ୍ତ ଚରନ ପଲ୍ଲବ
ଚିର ସ୍ୱପନ ରେଖେ ଯାୟ ଜୀବନ ତଣିତେ
କିଛୁ ଭୟ ନାହିଁ କିର ବାଁଚିତେ ମରିତେ ।"

ଆଧୁନିକ ଯୁଗ ବସ୍ତୁସର୍ବସ୍ୱତାର ଯୁଗ ; ଭଗବାନଙ୍କୁ ଅବିଶ୍ୱାସ କରିବା ଯୁଗ । ସମ୍ପ୍ରଦାୟବିଶେଷର ମତରେ ଧର୍ମ ଶୋଷଣର ଯନ୍ତ୍ର । ଅସ୍ତିତ୍ୱହୀନ ଭଗବାନଙ୍କ ସମ୍ପର୍କରେ ଶବ୍ଦହୀନ, ସ୍ପର୍ଶହୀନ ଇତ୍ୟାଦି ନାସ୍ତିବାଚକ ବିଶେଷଣ ପ୍ରୟୋଗ କରାହୁଏ, ସାଧାରଣ ସାଧୁ ଲୋକମାନଙ୍କୁ ବିଭ୍ରାନ୍ତ କରିବାପାଇଁ । ଏହି ଗୋଷ୍ଠୀର ଜଣେ ଲେଖକ ଯାଜ୍ଞବଲ୍‌କ୍ୟ ଗାର୍ଗୀ ସଂବାଦର ଗୋଟିଏ ଅଭିନବ ବ୍ୟାଖ୍ୟା କରିଛନ୍ତି । ଗାର୍ଗୀ, ବ୍ରହ୍ମଲୋକ କେଉଁଠାରେ ଓତପ୍ରୋତ ହୋଇ ରହିଥାଏ ପ୍ରଶ୍ନ କରିବାରୁ ଯାଜ୍ଞବଲ୍‌କ୍ୟ, କହିଥିଲେ "ତୁମେ ଅତିରିକ୍ତ ପ୍ରଶ୍ନ କର ନାହିଁ, ତୁମର ମସ୍ତିଷ୍କ ଯେପରି ପତିତ ନ ହୁଏ ।" ଲେଖକ କହୁଛନ୍ତି, ବ୍ରହ୍ମର ଅବାଙ୍‌ମାନସଗୋଚରତ୍ୱକୁ ଜ୍ଞାପନ କରିବାର ସରଳ ପ୍ରୟାସ ଏହା ନୁହେଁ, ଏହା ହେଉଛି ଧର୍ମ ପଛରେ ଶୋଷକ ସମ୍ପ୍ରଦାୟର ଯେ ପଶୁଶକ୍ତି ଅଛି, ତାହାକୁ ଭୟ ଦେଖାଇବା ।

---

# ପାରସୀ ସାହିତ୍ୟରେ ରହସ୍ୟବାଦ

ଏସ୍, ଏମ୍, ହାସାନ୍

ଇସ୍‌ଲାମ ଧର୍ମରେ ତତ୍ତ୍ୱଦ୍ରଷ୍ଟା ତଥା ରହସ୍ୟବାଦୀମାନେ 'ସୁଫି' ନାମରେ ପରିଚିତ । ଏହି 'ସୁଫି' ଶବ୍ଦର ମୌଳିକ ଉତ୍ପତ୍ତି ସଂପର୍କରେ ବିଭିନ୍ନ ମତବାଦ ଲକ୍ଷ୍ୟ କରାଯାଇଛି । "ଆସାବେ-ସଫା" ( ସଫା ବା ପରିଷ୍କାର ଶବ୍ଦରୁ ଗୃହୀତ ) ନାମକ ଶବ୍ଦରୁ ଗୃହୀତ ବୋଲି କେତେକ ମତ ବ୍ୟକ୍ତ କରିଥାନ୍ତି । ତା'ର କାରଣ ହେଉଛି ମଦିନାର ଦଳେ ଅଧ୍ୟୟନଶୀଳ ବ୍ୟକ୍ତିଙ୍କୁ "ଆସାବେ-ସଫା" କୁହାଯାଏ । ଅନେକଙ୍କ ମତରେ ଗ୍ରୀକ୍‌ଶବ୍ଦ ସଫିଷ୍ଟ୍ (Sophist)କୁ ନେଇ ଜ୍ଞାନ ଅର୍ଥରେ ଯେପରି ଫିଲସଫି (Philosophy) ଶବ୍ଦ ଗଢ଼ି ଉଠିଛି ସେହିପରି ସେଥିରୁ ହିଁ 'ସୁଫି' ଶବ୍ଦର ସୃଷ୍ଟି । ଏତଦ୍‌ବ୍ୟତୀତ ପ୍ରତିଷ୍ଠିତ ମତ ଅନୁସାରେ ଆରବୀୟ 'ସୁଫ୍' ଶବ୍ଦରୁ ଏହାର ଉତ୍ପତ୍ତି ।

ସୁଫ୍ କହିଲେ ରଙ୍ଗ ନ ହୋଇଥିବା ନିମ୍ନସ୍ତରର ପଶମକୁ ବୁଝାଇ-ଥାଏ । 'ସୁଫି' ମାନେ ସାଧାରଣତଃ ଏହି ପୋଷାକ ପରିଧାନ କରି-ଥାଆନ୍ତି । E. H. Palmer ତାଙ୍କର 'Oriental Mysticism' ପୁସ୍ତକରେ ଏହି ମତକୁ ସମର୍ଥନ କରିବା ସଙ୍ଗେ ସଙ୍ଗେ ମୁସଲମାନ ସଂପ୍ରଦାୟର ଏକ ଶାଖା ବା ସାଧୁଶ୍ରେଣୀୟ ବ୍ୟକ୍ତିଙ୍କଦ୍ୱାରା ବ୍ୟବହୃତ 'ସୁଫ୍'ର ଅନୁକରଣରେ 'ସୁଫି'ର ସୃଷ୍ଟି ବୋଲି ମତ ପୋଷଣ କରିଥାନ୍ତି । ତାଙ୍କ ମତରେ ଗ୍ରୀକ୍‌ଶବ୍ଦ 'ସଫିଷ୍ଟ୍' ସହିତ ଏହାର ସମ୍ବନ୍ଧ କେବଳ ଆକସ୍ମିକ ହୋଇପାରେ ।

ଆବୁ ହାସିମ ଉସ୍‌ମାନ୍-ବିନ୍-ସୁରିକ୍ ( ମୃତ୍ୟୁ ହିଜିରାପର ୧୬୨ ) ପ୍ରଥମ ସୁଫି ନାମରେ ପରିଚିତ । କିନ୍ତୁ ହିଜିରାଅବ୍ଦ ଗଣା ହେବାର ପ୍ରଥମ ତିନିଶହ ବର୍ଷ ମଧ୍ୟରେ ଜ୍ଞାନର ଯେ କୌଣସି ବିଭାଗରେ ପ୍ରାବିଣ୍ୟ ପ୍ରଦର୍ଶନ କରିଥିବା ବ୍ୟକ୍ତିଙ୍କ ପ୍ରତି ଏହି ଉପାଧି ବା ସଂଜ୍ଞା ପ୍ରଯୋଜ୍ୟ ଥିଲା । ସୁଫିମତ ସବୁ ପ୍ରଥମେ ଜେରୁଜେଲମ୍‌ରୁ ଆରମ୍ଭ ହୋଇଥିବାରୁ ଏବଂ ଏହି ଗୋଷ୍ଠୀ ଆତ୍ମନିରୋଧପ୍ରଥାର ସମର୍ଥକ ଥିବାରୁ କେତେକ ଇଉରୋପୀୟ ମନିଷୀ ଏହାକୁ ଇସ୍‌ଲାମ୍ ଧର୍ମ ଉପରେ ଖ୍ରୀଷ୍ଟ ଧର୍ମର ପ୍ରଭାବ ବୋଲି କହିଥାନ୍ତି । E. H. Palmerଙ୍କ ଭିନ୍ନ ଅନ୍ୟ କେତେକଙ୍କ ମତରେ 'ସୁଫିବାଦ' ଆର୍ଯ୍ୟମାନଙ୍କ ମନରେ ସେମିଟିକ୍ ମାନଙ୍କ ପ୍ରତି ଦେଖାଯାଇଥିବା ପ୍ରତିକ୍ରିୟାରୁ ଜାତ । ସଂକ୍ଷେପରେ କହିବାକୁ ଗଲେ ସେମାନଙ୍କର ଧାରଣା ଥିଲା ଯେ ମୁସଲମାନ ଧର୍ମ ସେମିଟିକ୍ ଧର୍ମାନ୍ତର୍ଗତହୋଇଥିବାରୁ ଅତ୍ୟନ୍ତ ନୀରସ ତଥା ଆର୍ଯ୍ୟ (ଆର୍ଯ୍ୟଗୋଷ୍ଠୀ ଉଦ୍ଭୂତ ବିଜିତ ଇରାନୀୟାନ୍) ମାନଙ୍କର ମନଃପୂତ ନ ହେବା ସଙ୍ଗେ ସଙ୍ଗେ ଅନ୍ତର୍ନିହିତ ଆତ୍ମିକ ଭାବରାଜିର ପରିତୁଷ୍ଟି ସାଧନରେ ଅସମର୍ଥ ଥିଲା । ସେଥିପାଇଁ ଇରାନୀୟାନ୍‌ମାନଙ୍କୁ ଇସ୍‌ଲାମ ଧର୍ମ ଗ୍ରହଣ କରିବାକୁ ପଡ଼ିଲାବେଳେ ସେହି ଧର୍ମ ସହିତ

ଆପାତ ସଂପର୍କଶୀଳ କେତେକ ଧର୍ମବିଶ୍ୱାସକୁ ଉଦ୍ଭାବନ କରିବାକୁ ପଡ଼ିଥିଲା । କିନ୍ତୁ ଉକ୍ତ ନବ ଉଦ୍ଭାବିତ ପନ୍ଥାସମୂହ ପ୍ରକୃତରେ ଭିନ୍ନ ଥିଲା । ଅଧ୍ୟାପକ ଇ.ଜି. ବ୍ରାଉନ୍ ଏଥିରେ ସନ୍ଦେହ ପ୍ରକାଶ କରି କହନ୍ତି, "ସୁଫିବାଦ ସେମିଟିକ୍ ଧର୍ମର ନିର୍ବେଦ ଗତାନୁଗତିକତା ବିରୁଦ୍ଧରେ ଆର୍ଯ୍ୟମାନଙ୍କର ନିଶ୍ଚିତ ପ୍ରତିକ୍ରିୟା—ଏକଦା ଲୋକପ୍ରିୟ ଏହି ମତବାଦ ଯେ କେତେଦୂର ଗ୍ରହଣଯୋଗ୍ୟ ତାହା ଅତ୍ୟନ୍ତ ସନ୍ଦେହଜନକ ।"

ଅନ୍ୟ କେତେକଙ୍କ ମତରେ 'ସୁଫିବାଦ' ମୁସଲମାନ ଧର୍ମ ଉପରେ ନବ-ପ୍ଲାଟୋ-ଦର୍ଶନ (Neo Platonic Philosophy)ର ପ୍ରତ୍ୟକ୍ଷ ପ୍ରଭାବରୁ ଜାତ । ସେମାନଙ୍କର ଧାରଣା ଯେ ଉମିୟାଡ୍-ମାନଙ୍କ ସମୟରେ ଯେତେବେଳେ ମୁସଲମାନମାନେ ଜୀବନର ପ୍ରତି ସ୍ତରାନ୍ତରରେ ଘେରି ରହିଥିବା ସମସ୍ୟାଗୁଡ଼ିକ ସଂପର୍କରେ ନିଜେ ଚିନ୍ତା କରିବାକୁ ଲାଗିଲେ ସେତେବେଳେ ଗ୍ରୀକ୍ ଦର୍ଶନରୁ ସେମାନେ ପ୍ରାରମ୍ଭିକ ଉପାଦାନ ଲାଭ କଲେ । ଇହୁଦୀ ଓ ଖ୍ରୀଷ୍ଟିୟାନ୍ ଅନୁବାଦକଙ୍କ ପ୍ରଚେଷ୍ଟା ଫଳରେ ଗ୍ରୀକ୍ ଦର୍ଶନ ସମ୍ବଳିତ ବହୁ ପୁସ୍ତକ ଆରବୀୟ ଭାଷାରେ ଦେଖାଯାଏ । ମୁସଲମାନ ଧର୍ମଧ୍ୱଜୀମାନେ ଏହି ବହି ସବୁରେ ପ୍ଲାଟୋ ଓ ଆରିଷ୍ଟୋଟଲ୍‌ଙ୍କର ଅବିକୃତ ଦର୍ଶନ ସ୍ଥାନ ଲାଭକରିବାର ଭ୍ରମ ଧାରଣା ନେଇ ଏ ସବୁକୁ ଗଭୀର ଭାବରେ ଅଧ୍ୟୟନ କରିଥିଲେ । କିନ୍ତୁ ବାସ୍ତବରେ ଏ ସବୁଥିରେ ଗ୍ରୀକ୍ ତଥା ପ୍ରାଚ୍ୟ, ବିଶେଷ କରି ମ୍ୟାଜିୟାନ୍ ଦର୍ଶନର ସମନ୍ୱୟ ସାଧିତ ହୋଇ-ଅଛି । ଏହାକୁ ବିନା ପ୍ରତିବାଦରେ Neo platonic Philosophy ବା ନବ-ପ୍ଲାଟୋ-ଦର୍ଶନ ନାମରେ ଗ୍ରହଣ କରାଯାଇ ପାରେ ।

ପୂର୍ବରୁ କୁହାଯାଇଛି ଯେ କେତେକ ପଣ୍ଡିତ 'ସୁଫିବାଦ'କୁ ସେମିଟିକ୍‌ମାନଙ୍କ ଉପରେ ଆର୍ଯ୍ୟ ଦର୍ଶନର ପ୍ରଭାବ ବୋଲି ଅଭିହିତ

କରିଥାଆନ୍ତି । ଯଦି ଆର୍ଯ୍ୟଶବ୍ଦକୁ ବୃହତ୍ତର ଅର୍ଥରେ ଗ୍ରହଣ କରାଯାଏ ଏବଂ ମ୍ୟାଜିଆନ୍ ଦର୍ଶନ ତା'ର ଅନ୍ତର୍ଭୁକ୍ତ ହୁଏ ତେବେ 'ସୁଫିବାଦ' ଉପରେ ଏହାର ଯେ ପ୍ରଭାବ ଥିଲା—ଏ କଥା ଅସ୍ୱୀକାର କରାଯାଇ ନ ପାରେ । ଏ ପ୍ରଭାବ କିନ୍ତୁ ମ୍ୟାଜିଆନ୍ ଦର୍ଶନଦ୍ୱାରା ପୂର୍ବରୁ ପ୍ରଭାବିତ ନବ-ପ୍ଲାଟୋ-ଦର୍ଶନ ମଧ୍ୟ ଦେଇ ଆସିଅଛି । ଏପରି କେତେକ ପାଶ୍ଚାତ୍ୟ ଚିନ୍ତାଶୀଳ ପଣ୍ଡିତ ମଧ୍ୟ 'ସୁଫିବାଦ'କୁ ବିଶେଷ କରି ତା'ର ଚରମ ପରିଣତିକୁ ବେଦାନ୍ତ ଦର୍ଶନଦ୍ୱାରା ପ୍ରଭାବିତ ବୋଲି କହିବାକୁ ପଶ୍ଚାତ୍‌ପଦ ହୁଅନ୍ତି ନାହିଁ । ବେଦାନ୍ତ ଓ 'ସୁଫିବାଦ'ର ମୌଳିକ ତତ୍ତ୍ୱଗୁଡ଼ିକ ମଧ୍ୟରେ ଥିବା ବାହ୍ୟିକ ସାଦୃଶ୍ୟରୁ ଏହି ଧାରଣା ଜନ୍ମ ନେଇଛି । ଉଭୟେ "ଓ୍ୟାଦାଟୁଲ ଓ୍ୟାଜୁଦ୍" (ଏକତ୍ୱବାଦ)ରେ ବିଶ୍ୱାସ କରନ୍ତି । ବେଦାନ୍ତ ମତାନୁସାରେ ମାନବାତ୍ମା ବିଶ୍ୱଆତ୍ମାର ଅନୁରୂପ । ଆତ୍ମା ଅବିନଶ୍ୱର ଏବଂ ତାହା ବିନା ଅନ୍ୟ କୌଣସି ବସ୍ତୁ ଅମର ନୁହେଁ । ବସ୍ତୁ ହେଉଛି ମାୟା ।

ଓ୍ୟାଦାତୁଲ ଓ୍ୟାଜୁଦ୍ ମତବାଦ ସୁଫି ଧାରଣାର ଓ ସୁଫି କବିତାର ବହୁ ଅଂଶ ଅଧିକାର କରିଅଛି । କିନ୍ତୁ ଏହା ବେଦାନ୍ତ ମତବାଦର ଅନୁରୂପ ନୁହେଁ । ସୁଫିମାନଙ୍କ ମତାନୁସାରେ ସମଗ୍ର ବିଶ୍ୱ ବାସ୍ତବତା ଉପରେ ପ୍ରତିଷ୍ଠିତ । ସେହି ବାସ୍ତବତାର ବିଭିନ୍ନ ରୂପ ହିଁ ଆମର ଗୋଚରୀଭୂତ ହୋଇଥାଏ । ଏକମାତ୍ର ଆତ୍ମା ସମଗ୍ର ବିଶ୍ୱକୁ ବ୍ୟାପ୍ତ କରି ରହିଅଛି । ଏଥିରେ ବିଭିନ୍ନତା ବା ପାର୍ଥକ୍ୟ ଅତି ସୂକ୍ଷ୍ମ ହେଲେହେଁ ପରିଲକ୍ଷିତ । ସୁଫିମାନେ ବସ୍ତୁର ଅବର୍ତ୍ତମାନତା ଓ କେବଳ ଭଗବାନଙ୍କ ବର୍ତ୍ତମାନତା ସମ୍ପର୍କରେ ନିଶ୍ଚିତ ଭାବରେ କିଛି କହି ନାହାନ୍ତି । କିନ୍ତୁ ସେମାନେ କେବଳ ଭଗବାନଙ୍କର ଅସ୍ତିତ୍ୱକୁ ହିଁ ସ୍ୱୀକାର କରିଥାନ୍ତି । ସେମାନେ କହନ୍ତି, ସୃଷ୍ଟି ଏବଂ ସ୍ରଷ୍ଟା ଏକ ଏବଂ ଅବିଚ୍ଛିନ୍ନ । କେବଳ ପରିଣତିଶୀଳତା ଏବଂ

ବୈପ୍ଳବିକ ଚିନ୍ତାଧାରା ଯୋଗୁଁ ଆମ୍ଭେମାନେ ଏହି ବିଶ୍ୱବ୍ୟାପକ ସତ୍ତାକୁ ଅନୁଭବ କିମ୍ବା ବିଶ୍ୱାସ କରିବାକୁ ସକ୍ଷମ ହୋଇପାରୁନାହୁଁ । ତଥାପି ଏହି ବିଶ୍ୱର ଯାହା କିଛି ମହାର୍ଘତା ବା ଗତିଶୀଳତା ଆମ୍ଭମାନଙ୍କର ଦୃଷ୍ଟିଗୋଚର ହୁଏ ତାହା ହିଁ ସ୍ୱର୍ଗୀୟ ସୌନ୍ଦର୍ଯ୍ୟର ପ୍ରତିବିମ୍ବ ମାତ୍ର । ତା ନ ହେଲେ ଏ ବିଶ୍ୱ ଆତ୍ମାବିହୀନ ଶରୀରରୂପେ ପ୍ରତିଭାତ ହେଉଥାଆନ୍ତା । ସେଥିପାଇଁ ଓ୍ୱାଜିବୁଲ ଓ୍ୱାଜୁଦ୍ ବା ବଞ୍ଚିବାର ଆବଶ୍ୟକତାକୁ ପ୍ରାଧାନ୍ୟ ଦିଆ ଯାଉଥିବା ଏ ଯୁଗରେ ମଧ୍ୟ କ୍ଷୟିଷ୍ଣୁ ଓ କ୍ଷଣସ୍ଥାୟୀ ପାର୍ଥିବ ବସ୍ତୁ ସମ୍ବନ୍ଧରେ ଉଲ୍ଲେଖର ଅବକାଶ ନାହିଁ ।

ମୁସଲମାନମାନଙ୍କ ମଧ୍ୟରେ ମଧ୍ୟ ଜୀବାତ୍ମା ପରମାତ୍ମାର ଅଂଶ ବୋଲି ସ୍ୱୀକାର କରୁଥିବା ବ୍ୟକ୍ତିର ଅଭାବ ନାହିଁ । ହିଜିରା ଅବ୍ଦର ଚତୁର୍ଥ ଶତକ ପର୍ଯ୍ୟନ୍ତ କେତେକ ମୁସଲମାନ ମହମ୍ମଦଙ୍କ ମିରାଜ ଅର୍ଥାତ୍ ମୃତ୍ୟୁକୁ ଆତ୍ମାର ଭଗବାନଙ୍କ ସହିତ ମିଳନ ବୋଲି ବ୍ୟାଖ୍ୟା କରିଥିଲେ । ହାଲାଜ୍, ସୁହ୍ରାଓ୍ୱାର୍ଦ୍ଦି, ଘାଜାଲି ପ୍ରଭୃତି କେତେକ ସୁଫିବାଦ ଉପରୁ ବାହ୍ୟ ପ୍ରଭାବର ନିରାକରଣ ପାଇଁ ଆପ୍ରାଣ ଚେଷ୍ଟା କରିଥିଲେ । ଠିକ୍ ଏହି ସମୟରେ ଶେଖ୍ ମୁହିଉଦ୍ଦୀନ୍ ଇବ୍‌ନୁଲ ଆରବୀ ସୁଫିବାଦର ଦାର୍ଶନିକ ବ୍ୟାଖ୍ୟାସମ୍ବଳିତ ଏକ ପୁସ୍ତକ ରଚନା କରିଥିଲେ । ସେ ମଧ୍ୟ ସମସ୍ତ ପ୍ରାଣୀଙ୍କୁ ଭଗବାନଙ୍କର ସତ୍ତା ବୋଲି ସ୍ୱୀକାର କଲେ । ଏପରି ଆତ୍ମାର ଘଟାନ୍ତର ଗ୍ରହଣ ସୁଫିବାଦରେ ସ୍ଥାନ ଲାଭ କଲା । ଇବ୍‌ନୁଲ ଆରବୀଙ୍କ ଦର୍ଶନ ସ୍ପେନ୍‌ର ପ୍ରସିଦ୍ଧ ମୁସଲମାନ ଓ ଇହୁଦୀ ଦାର୍ଶନିକମାନଙ୍କଦ୍ୱାରା ବହୁ ପରିମାଣରେ ପ୍ରଭାବିତ । ସ୍ପେନ୍‌ର ଦାର୍ଶନିକମାନେ ସେମାନଙ୍କ ରଚନାରେ ଉପମା ଓ ଅଳଙ୍କାରର ବ୍ୟବହାରରେ ଅତ୍ୟନ୍ତ ପ୍ରିୟ ଥିଲେ । ବିଶ୍ୱସ୍ରଷ୍ଟାଙ୍କୁ ପ୍ରେମମୟ ବା ପ୍ରେମମୟୀଙ୍କୁ ବିଶ୍ୱସ୍ରଷ୍ଟା ବୋଲି ଆଲଂକାରିକ ଭାବରେ

କହିବା ଏହି ଦାର୍ଶନିକମାନଙ୍କର ସାଧାରଣ ଧର୍ମ ଥିଲା । ଏହି ସବୁ ଚିନ୍ତାଧାରାର ଅନୁପ୍ରବେଶ ପରେ ପରେ ସୁଫିବାଦରେ ଇବନ୍-ତାଇମିୟାଙ୍କ ପରି କେତେକ ରକ୍ଷଣଶୀଳ ଲେଖକଙ୍କର ଆବିର୍ଭାବ ହେଲା । ସୁଯୋଗର ବଶବର୍ତ୍ତୀ ହୋଇ ସେମାନେ ଇବ୍‌ନୁଲ ଆରବୀଙ୍କୁ କଠୋର ଆକ୍ଷେପ କରିଥିଲେ । ଏପରି କି ଏସବୁ ଧାରଣା ପାଇଁ ଦାୟୀ ନ ଥିବା ଘାଜାଲି, ଓ ହାଲଜ ପ୍ରଭୃତି ଲେଖକମାନଙ୍କୁ ଆକ୍ରମଣ କରିବାକୁ ମଧ୍ୟ ସେମାନେ ପଶ୍ଚାତ୍‌ପଦ ହୋଇ ନ ଥିଲେ ।

ସୁଫିବାଦର ଶେଷ ପର୍ଯ୍ୟାୟରେ ଦୁଇଟି ପ୍ରସିଦ୍ଧ ଚିନ୍ତାଧାରାର ଅଭ୍ୟୁଦୟ ଘଟିଥିଲା । ପ୍ରଥମ ଚିନ୍ତାଧାରା ଅନୁସାରେ 'ସୁଫିବାଦ' ମୁସଲମାନ ଧର୍ମର ରକ୍ଷଣଶୀଳ ତତ୍ତ୍ୱଠାରୁ ବହୁ ଦୂରକୁ ଅଗ୍ରସର ହୋଇ ଯାଇଥିବାରୁ ଏ ଦୁହିଁଙ୍କ ଭିତରେ ଏକ ଆପୋଷ ସମାଧାନର ଆବଶ୍ୟକତା ଅନୁଭୂତ ହେଉଥିଲା । ଘାଜାଲି, କୁଶାରି ଏବଂ ଅବଦୁଲ୍ କରିମ୍ ଅଲ-ଜିଲି ପ୍ରଭୃତି 'ସୁଫିବାଦ'କୁ ମୁସଲମାନ ଧର୍ମସହ ସମାନ୍ତରାଳ ଭାବରେ ପ୍ରତିଷ୍ଠା କରିବାକୁ ଚେଷ୍ଟା କରିଥିଲେ । ଅବଦୁଲ ମ୍ୟାଜିଦ୍ ଦରିଆବାଦି କହନ୍ତି—ଏ ଧରଣର ମତବାଦ (ପାରଂପରିକ) ଗ୍ରୀକ୍ ଅନ୍ଧବିଶ୍ୱାସ, ଇରାନୀୟାନ୍ ଧାରଣା, ଭାରତୀୟ ଆତ୍ମାର ବ୍ୟବହାର ଏବଂ ବହୁ ଅଣମୁସଲମାନ ବିଷୟବସ୍ତୁର ମିଶ୍ରଣରୁ ଜାତ । ଦ୍ୱିତୀୟ ଭାବଧାରା ହେଉଛି 'ସୁଫିବାଦ'ର କବିତା ରାଜ୍ୟରେ ପ୍ରବେଶାଧିକାର, ବିଶେଷ ଭାବରେ ପାରସୀୟ କବିତାରାଜ୍ୟରେ ସୁଫିବାଦର ପ୍ରକାଶ । E. H. Palmerଙ୍କ ଭାଷାରେ "ସୁଫି ମତବାଦ ସ୍ୱର୍ଗୀୟ ସୌନ୍ଦର୍ଯ୍ୟସତ୍ତ୍ୱର ଆଧାର । ମରଣଶୀଳ ସଂସାରର ଅପୂର୍ଣ୍ଣ ସୁଷମା ସୁଫି ଭାବନାରେ ଚିରନ୍ତନ ସ୍ୱର୍ଗୀୟ ଆନନ୍ଦରେ ପରିଣତ ହୁଏ । ଏହି ଭାବଧାରାର ପ୍ରଧାନ ଗୀତିକବିମାନେ ଅପୂର୍ବ ଭାବନାର ପରିବେଷଣ ମାଧ୍ୟମରେ ମାନବକୁ ଏକ ନୈସର୍ଗିକ

ରାଜ୍ୟରେ ପହଞ୍ଚାଇ ଦିଅନ୍ତି ।" ଆରବ ରାଜ୍ୟରେ ସୁଫିମତବାଦ ଏକ ନିଛକ ଦର୍ଶନ ମାତ୍ର । ତେଣୁ ଇବ୍‌ନଲ୍ ଫରିଦାଙ୍କ ଛଡ଼ା ଏହି ପ୍ରକାର ଭାବନାକୁ ଆଉ କୌଣସି ଲେଖକ କବିତାରେ ରୂପାୟିତ କରି ନାହାନ୍ତି । ଖ୍ରୀଷ୍ଟାବ୍ଦର ଷଷ୍ଠ ଶତାବ୍ଦୀରେ ବହୁ ବରେଣ୍ୟ କବି ଓ ଲେଖକ ପାରସ୍ୟ ତଥା ଭାରତବର୍ଷରେ ସୁଫିମତବାଦକୁ ସମ୍ବଳ କରି ଚମତ୍କାର କାବ୍ୟକବିତା ରଚନା କରିଥିଲେ । ସେମାନଙ୍କ ମଧ୍ୟରେ ପାରସ୍ୟର ଅଲ୍‌ତାର, ସନାଇ, ରୁମି, ଜାମି ଓ ଭାରତର ଅମୀର ଖସ୍ରୁ, ବେଦିଲ୍ ଏବଂ ଘଟିଲ୍ ପ୍ରଧାନ । ଅଧ୍ୟାପକ ଇ. ଜି. ବ୍ରାଉନ୍‌ଙ୍କ ମତରେ ଅଲ୍‌ତାର, ସନାଇ, ଏବଂ ରୁମି ପାରସ୍ୟର କବିମାନଙ୍କ ମଧ୍ୟରେ ସୁଫିମତବାଦର ଶ୍ରେଷ୍ଠ ପରିପୋଷକ ।

ଫରିଦ୍ଦୁଦ୍ଦିନ୍ ଅଲ୍‌ତାର ୧୧୪ ଖଣ୍ଡି ପୁସ୍ତକ ପ୍ରଣୟନ କରି ଦ୍ୱାଦଶ ଶତାବ୍ଦୀର ଶେଷଭାଗରେ ନିଜର ଗୌରବପୂର୍ଣ୍ଣ ଜୀବନଲୀଳା ସାଙ୍ଗ କରିଥିଲେ । ଏମାନଙ୍କ ମଧ୍ୟରୁ ପ୍ରକୃତରେ ମାତ୍ର ୩୦ ଖଣ୍ଡି ପୁସ୍ତକ ସଂଗୃହୀତ ଏବଂ ଉଲ୍ଲେଖଯୋଗ୍ୟ । ତେବେ ଏହି ଜ୍ଞାତବ୍ୟ ପୁସ୍ତକମାନଙ୍କ ମଧ୍ୟରୁ ପଣ୍ଡନାମ (ଉପଦେଶନାମା) ଏବଂ ମାନ୍ତିଗ୍-ଉଲ୍-ତୟୁର୍ (ପକ୍ଷୀମାନଙ୍କର ଭାଷା) ବିଶେଷ ପ୍ରଣିଧାନ ଯୋଗ୍ୟ । ଶେଷୋକ୍ତ ପୁସ୍ତକଟି ମରମୀ ଭାବନା ପୂର୍ଣ୍ଣ ୪୬୦୦ ପଦର ସମଷ୍ଟି । ସୁଫି ଯାତ୍ରୀର ସତ୍ୟ ଅଥବା ପରମ ପିତା ଭଗବାନଙ୍କ ଉଦ୍ଦେଶ୍ୟରେ ଯାତ୍ରା ହେଉଛି ଏହି କାବ୍ୟଗ୍ରନ୍ଥର ପ୍ରଧାନ ମର୍ମ । ଏହି ଗ୍ରନ୍ଥର ଶେଷାଂଶରେ ଭକ୍ତ ଓ ଭଗବାନଙ୍କର ଅଦ୍ୱୈତ ପରିକଳ୍ପନା ଅତି ବିସ୍ତୃତ ଭାବରେ ପ୍ରକଟିତ ହୋଇଛି ।

ଏହି ସୁଫିକବିଙ୍କ ସମ୍ପର୍କରେ ଏକ ଚମତ୍କାର ଘଟଣା ଏଠାରେ ବର୍ଣ୍ଣନା କଲେ ବୋଧହୁଏ ଅପ୍ରାସଙ୍ଗିକ ହେବନାହିଁ । ତାଙ୍କର ଡାକ୍ତରୀ ବ୍ୟବସାୟ ଥିଲା ଏବଂ ସେ ନିଜେ ଗୋଟିଏ ବଡ଼ ଡାକ୍ତର-

ଖାନାର ପରିଚାଳକ ଥିଲେ । ତାଙ୍କର ବ୍ୟବସାୟ ଅତ୍ୟନ୍ତ ସମୃଦ୍ଧ ଥିଲା । ସେ ଦିନେ ଦୋକାନର କାରବାରରେ ଅତ୍ୟନ୍ତ କାର୍ଯ୍ୟବ୍ୟସ୍ତ ଥିଲାବେଳେ ଜଣେ ଆସି ତାଙ୍କୁ ଭିକ୍ଷା ମାଗିଲେ । କାର୍ଯ୍ୟଦାୟରେ ସେ ଭିକାରି ଜଣଙ୍କୁ ଦୃଷ୍ଟି ଦେଇ ପାରିଲେ ନାହିଁ । ତହୁଁ ଭିକାରି ଜଣକ କହିଲେ, "ଆପଣ ତ ଏତେ କାର୍ଯ୍ୟବ୍ୟସ୍ତ, ଆପଣଙ୍କର ପ୍ରାଣକୁ କପରି ମୁକ୍ତି ଦେବେ ?" ଅଲ୍ତାର ବିରକ୍ତ ହୋଇ କହିଲେ, "ତୁମେ ଯେମିତି ପ୍ରାଣକୁ ମୁକ୍ତି ପାରିବ ।" ତାପରେ ଭିକାରି ଜଣକ କହିଲେ, "ମୁଁ ଯେପରି ଭାବରେ ପ୍ରାଣକୁ ମୁକ୍ତିବି, ତୁମେ ତାହା ପାରିବ ନାହିଁ ।" ଏହା କହି ସେ ଭିକ୍ଷାଥଳୀଟିକୁ ମୁଣ୍ଡତଳେ ଦେଇ ସେହିଠାରେ ଭୂମି ଉପରେ ଶୋଇ ପଡ଼ିଲେ ଏବଂ ବିଭୁନାମ ସ୍ମରଣ କରି ହସି ହସି ଜୀବନଲୀଳା ସମ୍ବରଣ କଲେ । ଅଲ୍ତାରଙ୍କୁ ଏହି ଘଟଣା ଅଭିଭୂତ କରି ପକାଇଲା । ସଂସାର ପ୍ରତି ଅନାସକ୍ତ ହୋଇ ସେ ସନ୍ନ୍ୟାସ ବ୍ରତଗ୍ରହଣ କଲେ । ପରେ ଜଣେ ଅବିଶ୍ୱାସୀ ସୈନିକ ହାତରେ ତାଙ୍କୁ ପ୍ରାଣବଳି ଦେବାକୁ ପଡ଼ିଥିଲା ।

ଜଲାଲୁଦ୍ଦିନ୍ ମହମ୍ମଦ ସାଧାରଣ କ୍ଷେତ୍ରରେ ମୌଲାନା ରୁମି ନାମରେ ଅତ୍ୟନ୍ତ ସୁପରିଚିତ । ପର୍ସିଆର ସୁଫି କବିମାନଙ୍କ ମଧ୍ୟରେ ସେ ଅଗ୍ରଗଣ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ ? ଅଧ୍ୟାପକ ବ୍ରାଉନ୍‌ଙ୍କ ମତରେ ତାଙ୍କର ସୁଫିମତବାଦୀ କବିତା ସକଳ ସର୍ବଯୁଗମର୍ଯ୍ୟୀ ସୌନ୍ଦର୍ଯ୍ୟର ଆଧାର । ଏହି ବିଖ୍ୟାତ ମରମୀଗ୍ରନ୍ଥ ଛଅ ଖଣ୍ଡରେ ବିଭକ୍ତ ଏବଂ ରଚିତ ହେବାକୁ ପ୍ରାୟ ୧୦ ବର୍ଷ ସମୟ ଲାଗିଥିଲା । ପ୍ରଫେସର ବ୍ରାଉନଙ୍କ ଭାଷାରେ "ଏହି ଗୀତିଧର୍ମୀ ମରମୀଗ୍ରନ୍ଥ ଅତ୍ୟନ୍ତ ଉଚ୍ଚକୋଟୀର ଏବଂ ସାଧାରଣତଃ ପାରସ୍ୟ ଭାଷାରେ ଏହାକୁ କୋରାନ୍ ଆଖ୍ୟା ଦିଆଯାଇଥାଏ । ଏହି ଗ୍ରନ୍ଥର ଅବତରଣିକାରେ ଲେଖକ ଦାବୀ କରିଛନ୍ତି ଯେ ସେଥିରେ ଧର୍ମର ଅତି ଗୂଢ଼ ଏବଂ ମୌଳିକ ତତ୍ତ୍ୱ ନିହିତ ଅଛି ।"

ମୌଲାନା ରୁମି ଆଲୋଚନା ସ୍ଥଳରେ କହିଛନ୍ତି ଯେ ଏହି ରହସ୍ୟବାଦୀ ଆନ୍ଦୋଳନର ଆତ୍ମା ସ୍ୱରୂପ ହେଉଛନ୍ତି 'ଆଲତାର୍' ଏବଂ 'ସନାଇ' ହେଉଛନ୍ତି ତା'ର ଦୁଇ ଚକ୍ଷୁ ଏବଂ ନିଜେ ରୁମି ସନାଇଙ୍କୁ ଅନୁସରଣ କରି ଚାଲିଛନ୍ତି । ତେଣୁ ପାରସ୍ୟର ଏହି ପ୍ରସିଦ୍ଧ ସୂଫୀଙ୍କ ମଧ୍ୟରେ 'ସନାଇ'ଙ୍କର ଗୁରୁତ୍ୱ କିଛି କମ୍ ନୁହେଁ । ବରଂ କାଳ ଅନୁକ୍ରମେ ସେ ହେଉଛନ୍ତି ଏହି ଶ୍ରେଣୀର କବିମାନଙ୍କ ମଧ୍ୟରେ ସର୍ବପ୍ରଥମ । ସନାଇଙ୍କ ଜୀବନକାଳ ସଂପର୍କରେ ବିଶେଷ କିଛି ଜଣାଯାଏ ନାହିଁ । ତେବେ ସେ ବାହାରାମ୍ ଶାହଙ୍କ ରାଜଦରବାର ସହିତ ସମ୍ପୃକ୍ତ ଥିଲେ ବୋଲି ଜଣାଯାଏ । ରାଜକବି ଅବସ୍ଥାରୁ ପରେ ସେ କିପରି ଜଣେ ସତ୍ୟଦ୍ରଷ୍ଟା ରହସ୍ୟବାଦୀ କବିରେ ପରିଣତ ହେଲେ, ତାହାର କୌଣସି ବିବରଣୀ ଜଣାଯାଏ ନାହିଁ । ମାତ୍ର ତାଙ୍କର ବିଖ୍ୟାତଗ୍ରନ୍ଥ 'ହାଦିକ୍ୱା' ସେ ଜୀବନର ପରିଣତ ବୟସରେ ଲେଖିଥିଲେ, ଏଥିରେ ଆଦୌ ସନ୍ଦେହ ନାହିଁ । ଅଧ୍ୟାପକ ବ୍ରାଉନ୍ ଏହି ଗ୍ରନ୍ଥକୁ 'ସତ୍ୟର ଉପବନ' ବୋଲି ନାମିତ କରିଛନ୍ତି । ରୁମିଙ୍କ ଗ୍ରନ୍ଥ ସନାଇଙ୍କ ରଚନା ପରି ପ୍ରସିଦ୍ଧ ନ ହେଲେହେଁ ତହିଁରେ ମରମୀ ଭାବନା ବ୍ୟକ୍ତିଗତ ନୈତିକତା ଓ ଏବଂ ଆଧ୍ୟାତ୍ମିକତାର ଅଧିକ ପ୍ରଚାର କରାଯାଇଛି । ତେବେ ଏଥିପାଇଁ ରୁମିଙ୍କର ଗୁରୁତ୍ୱ ହାନି ହେବାର କୌଣସି କାରଣ ନାହିଁ । କାରଣ ସେ ହେଉଛନ୍ତି ପ୍ରଥମ ପାରସୀ କବି, ଯେ କି ରହସ୍ୟବାଦୀ ଭାବନାକୁ ପାର୍ସି କବିତାରେ ଧାରାବାହିକ ଭାବରେ ପରିବେଷଣ କରି ପାରିଥିଲେ । ଅବଶ୍ୟ ତାଙ୍କ ପୂର୍ବରୁ ଆବୁ ସୟଦ୍ ଅଲ୍ଲ୍ ଖାଁ ମରମୀ ଭାବନାବ୍ୟଞ୍ଜକ କେତେକ ପଦ ରଚନା କରିଥିଲେ । ପରେ ସନାଇ ମରମୀ ଭାବନାର ରହସ୍ୟକୁ ଉଦ୍‌ଘାଟନ କଲେ ନିଜର ରଚନାରେ ।

Thy prayer-mat stain with wine if so
The Magia'ns favour thou can'st win
For travellers in the land should know
The ways and customs of the inn

—Hafiz.

ପାମରଙ୍କ ମତରେ ଆଲୋଚ୍ୟ ଉଦ୍ଧୃତାଂଶଟି ଅତ୍ୟନ୍ତ ରହସ୍ୟ ବ୍ୟଞ୍ଜକ ।

ପ୍ରାଚ୍ୟଦେଶମାନଙ୍କରେ ହାଫିଜ୍‌ଙ୍କ ନାମ ସହିତ ପ୍ରତ୍ୟେକ ଶିକ୍ଷିତ ବ୍ୟକ୍ତି ଅଳ୍ପେ ବହୁତେ ପରିଚିତ । ସେ ଭାରତବର୍ଷକୁ କେବେହେଲେ ପରିଦର୍ଶନ କରି ନ ଥିଲେହେଁ ଭାରତ ସହିତ ତାଙ୍କର ସଂପର୍କ ଅତି ନିବିଡ଼ ଥିଲା । ଦାକ୍ଷିଣାତ୍ୟର ବାହମନୀ ସୁଲତାନଙ୍କଦ୍ୱାରା ଭାରତ ଭ୍ରମଣ ପାଇଁ ସେ ନିମନ୍ତ୍ରିତ ହୋଇଥିଲେ । ଏବଂ ବଙ୍ଗଳାର ସୁଲତାନ ଗ୍ୟାସଉଦ୍ଦିନ୍‌ଙ୍କ ସହିତ ତାଙ୍କର ପତ୍ରାଳାପ ଥିଲା । ୧୯୩୨ ସାଲରେ କବିଗୁରୁ ରବୀନ୍ଦ୍ରନାଥ ଯେତେବେଳେ ପାରସ୍ୟ ଭ୍ରମଣରେ ଯାଇଥିଲେ, ସେ ସେତେବେଳେ ହାଫିଜ୍‌ଙ୍କର ସ୍ମୃତିମନ୍ଦିର ଦର୍ଶନ କରିଥିଲେ । ସେଠାରେ ରବୀନ୍ଦ୍ରନାଥ ତାଙ୍କର ବନ୍ଧୁମାନଙ୍କୁ କହିଥିବାରୁ ଜଣାଯାଏ ଯେ ତାଙ୍କର ପିତା ହାଫିଜ୍‌ଙ୍କର ଅତ୍ୟନ୍ତ ଭକ୍ତ ଥିଲେ ଏବଂ ରବୀନ୍ଦ୍ରନାଥ ପିଲା ଥିଲାବେଳେ ସେ ତାଙ୍କୁ ହାଫିଜ୍‌ଙ୍କ ରଚନାରୁ ଅନେକ ପଦ ପଢ଼ି ଶୁଣାଉଥିଲେ । ଫଳରେ ହାଫିଜ୍‌ଙ୍କ ରଚନା ରବୀନ୍ଦ୍ରନାଥଙ୍କ ମନରେ ଗଭୀର ଭାବରେ ରେଖାପାତ କରିଥିଲା । ସେ ସ୍ୱୀକାର କରିଥିଲେ ଯେ ହାଫିଜ୍‌ଙ୍କ ମୂଳ ରଚନାର ସୌନ୍ଦର୍ଯ୍ୟ ଉପଲବ୍‌ଧି କରିବାର ଯୋଗ୍ୟତା ତାଙ୍କର ନ ଥିଲା । ତଥାପି ସେ ତାଙ୍କ ରଚନାଦ୍ୱାରା ପରୋକ୍ଷ ଭାବରେ ପ୍ରଭାବିତ ବୋଲି ଅନୁଭବ କରୁଥିଲେ ।

ହାଫେଜ୍‌ଙ୍କ 'ଦୱିୱାନ' ପାରସ୍ୟରେ ବହୁଳ ପ୍ରଶଂସିତ ଏବଂ ଅତ୍ୟନ୍ତ ପ୍ରିୟ । ତେବେ ତାଙ୍କ କବିତାର ମର୍ମ ସଂପର୍କରେ ନାନା ମତବାଦ ଦୃଷ୍ଟିଗୋଚର ହୁଏ । ତାଙ୍କର ରଚନାଗୁଡ଼ିକ ଅତ୍ୟନ୍ତ ସାଙ୍ଗୀତିକ ଏବଂ ତାହା ସାମଯ୍ୱିକ ରହସ୍ୟବାଦୀ ଭାବନାରେ ପରିପୂର୍ଣ୍ଣ ।

ଅବଦୁଲ୍ ରହମାନ୍ ଜାମି ଆଉ ଜଣେ ବିଖ୍ୟାତ ରହସ୍ୟବାଦୀ କବି । ତାଙ୍କ ରଚିତ 'ଲଇଆ' ଅତ୍ୟନ୍ତ ଲୋକପ୍ରିୟ । ରହସ୍ୟବାଦୀ ଦର୍ଶନ ସଂପର୍କରେ ଏ ପୁସ୍ତକ ଏକ ସଫଳ ସଂକଳନ । "ଲଇଆ"ର ଆକ୍ଷରିକ ଅର୍ଥ ହେଉଛି "ଉଜ୍ଜ୍ୱଳ କିରଣ" ଅଥବା ଆଳଂକାରିକ ଅର୍ଥରେ "ଦୈନିକ ଲିପି" । ଯେଉଁ ସମୟରେ ନୂତନ ଧର୍ମମତ ଏବଂ ଇବ୍‌ନୁଲ ଆରବୀଙ୍କର ୱାହଦାତୁଲ ୱାଜୁଦ୍ ବର୍ଣ୍ଣିତ ମତବାଦ ସମଗ୍ର ମୁସଲମାନ ଜଗତରେ ଜନସାଧାରଣଙ୍କ ପ୍ରାଣକୁ ଅଭିଭୂତ କରିଥିଲା, ସେହି ସମୟରେ ରହସ୍ୟବାଦୀ ଭାବନା ମୁସଲମାନୀ ସାରିୟାତ୍ ବା ଆଇନ୍‌ରୁ ଦୂରେଇ ଯାଇଥିଲା । ଅଥଚ ସେହି ସମୟରେ 'ଜାମି' ଜନ୍ମ ଗ୍ରହଣ କରିସୁଦ୍ଧା ମୁସଲମାନୀ ଚିନ୍ତାଧାରାରୁ ଦୂରେଇ ଯାଇ ପାରି ନ ଥିଲେ ।

ଏହାଛଡ଼ା ଭାରତରେ ଜନ୍ମଗ୍ରହଣ କରିଥିବା କେତେକ ପାର୍ସି ରହସ୍ୟବାଦୀ ଏଠାରେ ଆଲୋଚ୍ୟ । ତ୍ରୟୋଦଶ ଶତାବ୍ଦୀରେ ଅବତୀର୍ଣ୍ଣ ଅମୀର ଖସ୍ରୁ ଜଣେ ବିରାଟ ପ୍ରତିଭାଶାଳୀ ବ୍ୟକ୍ତି । ସେ ଖିଲ୍‌ଜୀ ଏବଂ ତୋଗଲକମାନଙ୍କ ଅମଳରେ ଅବସ୍ଥାନ କରୁଥିଲେ । ସୁଫି ସମ୍ପ୍ରଦାୟର ଜଣେ ସନ୍ନ୍ୟାସୀ, ଜଣେ ବିଖ୍ୟାତ ପାର୍ସୀ କବି, ବିଖ୍ୟାତ ସଙ୍ଗୀତଜ୍ଞ ଏବଂ ସର୍ବୋପରି ଜଣେ ପରୀକ୍ଷାବାଦୀ ଭାବରେ ଖସ୍ରୁ ଅବିସ୍ମରଣୀୟ । ଉର୍ଦ୍ଦୁ ଭାଷାର ପ୍ରାରମ୍ଭ କାଳର ଲେଖକ ଭାବରେ ମଧ୍ୟ ଇତିହାସ ପୃଷ୍ଠାରେ ସେ ଅମର ହୋଇଛନ୍ତି । ସୁଫି ସମ୍ପ୍ରଦାୟର ପ୍ରସିଦ୍ଧ ସାଧକ ନିଜାମୁଦ୍ଦିନ୍ ଆଉଲିଙ୍କର ସେ ହେଉଛନ୍ତି

ଶିଷ୍ୟ । ଜଣେ ପାର୍ସୀ କବି ଭାବରେ ତତ୍କାଳୀନ ଭାରତୀୟ ସମାଜରେ ସେ ଅଦ୍ୱିତୀୟ ଏବଂ ଅତୁଳନୀୟ । ଏପରି କି ଉର୍ଫି, ହାଫିଜ୍ ଏବଂ ଜାମିଙ୍କ ଭଳି ବିଖ୍ୟାତ ପାର୍ସୀ ଲେଖକଗଣ ମଧ୍ୟ ଅକୁଣ୍ଠିତ ଚିତ୍ତରେ ତାଙ୍କର ମହତ୍ତ୍ୱ ସ୍ୱୀକାର କରିଛନ୍ତି । ପାର୍ସୀ ସାହିତ୍ୟରେ ବିଦିତ ଯାବତୀୟ ପ୍ରକାର ଢଙ୍ଗରେ ସେ କବିତା ରଚନା କରିଯାଇଛନ୍ତି । ତେବେ ରହସ୍ୟବାଦ ଭାବନା ପାଇଁ ତାଙ୍କର ଗଜଲ୍‌ଗୁଡ଼ିକ ଅତ୍ୟନ୍ତ ପ୍ରସିଦ୍ଧ । ଏ ଦିଗରେ 'ସାଜ' ଏବଂ ହାଫିଜ୍ କେବଳ ତାଙ୍କ ସହିତ ତୁଳନୀୟ ହୋଇପାରନ୍ତି ।

ଅବଦୁଲ କ୍ୱାଦର ବେଦିଲ୍ ଆଉ ଜଣେ ପ୍ରସିଦ୍ଧ ସୁଫି ସମ୍ପ୍ରଦାୟର କବି । ସେ ମୋଗଲ ବାଦଶାହ ଆଓରଙ୍ଗଜେବ୍‌ଙ୍କର ସମକାଳୀନ । ସେ ଅଜିମାବାଦ (ପାଟନା)ରେ ଜନ୍ମଗ୍ରହଣ କରିଥିଲେହେଁ ତାଙ୍କ ଜୀବନର ଅଧିକାଂଶ ସମୟ ଦିଲ୍ଲୀରେ ଅତିବାହିତ ହୋଇଥିଲା । ପାର୍ସୀ ସାହିତ୍ୟରେ "ସବକ୍ ଇଣ୍ଡି" ଶୈଳୀର ସେ ହେଉଛନ୍ତି ଆଦ୍ୟ ପ୍ରବର୍ତ୍ତକ । ଏହି ଶୈଳୀର ରଚନା କେବଳ ଭାରତରେ ଅନୁଭୂତ ହୋଇଥାଏ । ରହସ୍ୟବାଦୀ ଭାବନା ଆଳଙ୍କାରିକ ଢଙ୍ଗରେ ଅତ୍ୟନ୍ତ ସଫଳତାର ସହିତ ଏହି ଶୈଳୀ ମାଧ୍ୟମରେ ପରିବେଷଣ କରାଯାଇଥାଏ ।

ବିଖ୍ୟାତ ପାର୍ସୀ କବି ମିର୍ଜା ଗାଲିବ୍ ଏହି ଶୈଳୀର ଶ୍ରେଷ୍ଠ ଉପାସକ । ସେ ଜୀବନଯାତ୍ରାରେ ସୁଫି ମତାବଲମ୍ବୀ ନ ହେଲେହେଁ ତାଙ୍କ କବିତାଗୁଡ଼ିକ ଅତ୍ୟନ୍ତ ମରମୀ ଏବଂ ସେହି ରହସ୍ୟ ଭାବନାପୂର୍ଣ୍ଣ ଶୈଳୀ ସମ୍ପୂର୍ଣ୍ଣ ବେଦିଲ୍‌ଙ୍କୁ ହିଁ ଅନୁସରଣ କରିଥାଏ ।

ଏଣିକି ପାର୍ସି ଗଦ୍ୟରେ କିପରି ରହସ୍ୟ ଭାବନା ପ୍ରତିଫଳିତ ହୋଇଛି ତାହାର ବିଚାର କରାଯାଇପାରେ । ଅଧିକାଂଶ ରହସ୍ୟବାଦୀ ଗଦ୍ୟରଚନା ବିଭିନ୍ନ ମତବାଦକୁ ବିଶ୍ଳେଷଣ କରିବାରେ ହିଁ

ନର୍ଦ୍ଦିଷ୍ଟ । ଅଜଦ୍ ଇବ୍ନୁ ମହମ୍ମଦ ଅଲ୍ନି—ନସିଫ୍, ମାକ୍ସଦ୍-ଇ ଅକ୍ସା (ଆଗାମୀ ଲକ୍ଷ୍ୟ) ଶୀର୍ଷକ ଯେଉଁ ମୌଳିକ ଗ୍ରନ୍ଥ ଲେଖିଛନ୍ତି ତାହା ଅତି ଚମତ୍କାର ଭାବରେ E. H. Palmerଙ୍କଦ୍ୱାରା ଇଂରେଜରେ ଭାଷାନ୍ତରିତ ହୋଇଅଛି । ପାମର୍ ମନେ କରନ୍ତି ଯେ ଏହାର ମୂଳଗ୍ରନ୍ଥ ପ୍ରଥମେ ତୁର୍କୀଭାଷାରେ ରଚିତ ହୋଇ ପରେ ପାର୍ସିକୁ ଅନୁଦିତ ହୋଇଥିଲା । ମାତ୍ର ଏ.ଜେ. ଆର୍ବେରି ଏହି ମତକୁ ସମର୍ଥନ କରନ୍ତି ନାହିଁ । ତାଙ୍କର ବିଶ୍ୱାସ ଯେ ଏହା ପ୍ରଥମେ ପାର୍ସିରେ ହିଁ ଲେଖାଯାଇଥିଲା । ଏହି ଗ୍ରନ୍ଥର ପରିକଳ୍ପନା ସହିତ ଆଲ୍ଡାର୍ଙ୍କର ମାନ୍ ଟିକଣ୍ଟ୍ଡସ୍ମାର୍ ବା ବୁନୟାନ୍ଙ୍କର ପିଲ୍ଗ୍ରିମସ୍ ପ୍ରଗ୍ରେସ୍‌ର ଅଦ୍ଭୁତ ସାମଞ୍ଜସ୍ୟ ରହିଛି । ଏଥିରେ ସେହି ସୀମାହୀନ ଲକ୍ଷ୍ୟ ଉଦ୍ଦେଶ୍ୟରେ ପାନ୍ଥର ଯାତ୍ରା ସଂପର୍କରେ ଆଲୋକପାତ କରାଯାଇଛି । ଏଠାରେ ପାନ୍ଥକୁ ହୁଏତ ବୁଦ୍ଧିଜୀବୀ ମନୁଷ୍ୟ ଭାବରେ କଳ୍ପନା କରାଯାଇଛି । ମାତ୍ର ପରେ ଏହି ଯାତ୍ରୀକୁ ଭକ୍ତ ଭାବରେ ଚିହ୍ନିତ କରାଯାଇଥିବା ଜଣାଯାଏ ।

ପାର୍ସି ସାହିତ୍ୟରେ ଅଲିବିନ୍ ଓସମାନ୍ ହଜ୍‌ବେରିଙ୍କ ରଚିତ "କାଶଫୁଲ୍ ମହଜୁବ୍" ରହସ୍ୟବାଦ ସମ୍ପର୍କରେ ପ୍ରାଚୀନତମ ଗ୍ରନ୍ଥ । ବହୁକାଳ ପୂର୍ବେ ସୋଭିଏଟ୍ ରୁଷର ଲେଲିନ୍‌ଗ୍ରାଡ୍ ବିଶ୍ୱ-ବିଦ୍ୟାଳୟର ଅଧ୍ୟାପକ ଜୁକୋଭସ୍କି ଏହି ପୁସ୍ତକ ପ୍ରକାଶ କରି-ଥିଲେ । ହଜ୍‌ବେରିଙ୍କ ମରମୀ ଭାବନା ସମ୍ବଳିତ ଅଭିବ୍ୟକ୍ତି ଅତ୍ୟନ୍ତ ଅଭିନବ ଏବଂ ତାଙ୍କର ସ୍ୱାତନ୍ତ୍ର୍ୟର ପରିଚୟସୂଚକ । ଏହି ପୁସ୍ତକ କେତେକ ଘଟଣାବଳୀର ସଂକଳନ ନୁହେଁ ବରଂ ରହସ୍ୟବାଦ ସମ୍ପର୍କରେ ଏହା ଏକ ତଥ୍ୟପୂର୍ଣ୍ଣ ଗ୍ରନ୍ଥ ।

ସେଖ୍ ଅବଦୁଲ୍ କ୍ୱାଦର ଜିଲାନ "ଫତୁହଲ ଘାଇବ୍" ଶୀର୍ଷକ ପୁସ୍ତକ ରଚନା କରିଥିଲେ । ଯାହା କ ପରେ ଦିଲ୍ଲୀର ଅବଦୁଲ

ହକ୍ ମାହାଦଶଙ୍କଦ୍ୱାରା ଅନୂଦିତ ହୋଇଥିଲା । ଏହି ପୁସ୍ତକ ମୁସଲମାନ ଆଇନ୍ ସମ୍ପର୍କରେ ଏକ ରଚନା ହେଲେହେଁ ସ୍ଥଳେ ସ୍ଥଳେ ମରମୀଭାବନାର ପରିଚୟ ମିଳେ ।

ଫଓ୍ୟାଦୁଲ୍ ଫଓ୍ୟାଦ୍ ପାର୍ସି ଭାଷାରେ ଆଉ ଏକ ଉଲ୍ଲେଖ-ଯୋଗ୍ୟ ଗ୍ରନ୍ଥ । ଦିଲ୍ଲୀର ବିଖ୍ୟାତ ମୁସଲମାନ ସାଧୁ ଖ୍ୱାଜା ନିଜାମୁଦ୍ଦିନ୍ ଅଲିଆ ଏହାର ଲେଖକ । ଏହାଙ୍କର ପ୍ରସିଦ୍ଧ ଶିଷ୍ୟ ଅମୀର ଖସ୍ରୁଙ୍କ ସଂପର୍କରେ ପୂର୍ବରୁ ଆଲୋଚନା କରାଯାଇଛି । ପ୍ରକୃତରେ ଅଲିଆ ନିଜେ ଏହା ଲେଖି ନ ଥିଲେ । ସେ ଯେଉଁ ଉପଦେଶାବଳୀ ଦେଇ ଯାଇଥିଲେ ତାହା ପରେ ଶିଷ୍ୟମାନଙ୍କଦ୍ୱାରା ସଙ୍କଳିତ ହୋଇଥିଲା । ଭାରତରେ ଲୋକପ୍ରିୟ ରହସ୍ୟବାଦର ଚସ୍ତିଆ ମାର୍ଗ ସଂପର୍କରେ ଏ ପୁସ୍ତକରେ ପ୍ରାଞ୍ଜଳ ଭାବରେ ଆଲୋଚନା କରାଯାଇଛି ।

ଏହା ପୂର୍ବରୁ 'ଜାମିଙ୍କୁ' ଜଣେ ରହସ୍ୟବାଦୀ କବି ଭାବରେ ଆଲୋଚନା କରାଯାଇଛି । ମାତ୍ର ତାଙ୍କର କବିତା ଛଡ଼ା 'ଲଇଆ' ନାମକ ଗଦ୍ୟ ଗ୍ରନ୍ଥ ମଧ୍ୟ ଅଛି ।

ଏ କଥା ସ୍ୱୀକାର୍ଯ୍ୟ ଯେ ପାର୍ସି କବିତା ଏବଂ କେତେକ ପରିମାଣରେ ଉର୍ଦ୍ଦୁ କବିତାରେ ସୁଫିଭାବନାର ପ୍ରଭାବ ଯୋଗୁଁ ହିଁ ରହସ୍ୟବାଦୀ ଚିନ୍ତାଧାରା ପରିବେଷିତ ହୋଇଥିଲା । ଏହାର ଅର୍ଥ ଏପରି ନୁହେଁ ଯେ ପ୍ରତ୍ୟେକ ରହସ୍ୟବାଦୀ ଲେଖକ ସୁଫି ସମ୍ପ୍ରଦାୟ-ଭୁକ୍ତ । ସୁଫି ଭାବନାର ଆଦର୍ଶ ହିଁ ଗୋଷ୍ଠୀ ନିର୍ବିଶେଷରେ ପ୍ରଣୋଦିତ କରି ସାହିତ୍ୟରେ ରହସ୍ୟବାଦୀ ଭାବନାକୁ ପୁଷ୍କଳ କରିଥିଲା । ତେବେ ମିର୍ଜା ଘାଲିବ୍‌ଙ୍କୁ ଛାଡ଼ିଦେଲେ ଏହି ପ୍ରବନ୍ଧର ଆଲୋଚ୍ୟ ଅଧିକାଂଶ ଲେଖକ ଓ କବି ସୁଫି ମତବାଦୀ ଏବଂ ପାର୍ସି ସାହିତ୍ୟରେ ସୁଫି ଭାବନାର ପ୍ରବର୍ତ୍ତକ କହିଲେ ଚଳେ ।

# ଇଂରାଜି ସାହିତ୍ୟରେ ମିଷ୍ଟିସିଜମ୍

ଶ୍ରୀ ଦେବପ୍ରସାଦ ପଟ୍ଟନାୟକ

ମିଷ୍ଟିସିଜମ୍‌ର ଅଭିଧାନଗତ ସଂଜ୍ଞା ହେଉଛି, "Spiritual apprehension of truths beyond understanding." ବଶିଷ୍ଟ ଦାର୍ଶନିକ ଉଇଲିୟମ୍ ଜେମସ୍ ଏହି ସଂଜ୍ଞାକୁ ଗ୍ରହଣ କରିବା ସଙ୍ଗେ ସଙ୍ଗେ ମିଷ୍ଟିସିଜମ୍‌ରେ ଗଭୀର ସମନ୍ୱୟ, ଏବଂ ଐକ୍ୟ ଅନୁଭବ କରିବାରେ ଯଥେଷ୍ଟ ପ୍ରାଧାନ୍ୟ ଆରୋପ କରିଛନ୍ତି । ଶ୍ରୀମଦ୍ ଭଗବତ୍ ଗୀତା'ର ଅଷ୍ଟାଦଶ ଅଧ୍ୟାୟରେ ଶ୍ରୀକୃଷ୍ଣ କହିଛନ୍ତି—

"ସର୍ବ ଭୂତେଷୁ ଯେନୈକଂ ଭାବମବ୍ୟୟମୀକ୍ଷତେ ।
ଅବିଭକ୍ତଂ ବିଭକ୍ତେଷୁ ତଜ୍‌ଜ୍ଞାନଂ ବିଦ୍ଧି ସାତ୍ତ୍ୱିକମ୍ ॥
ପୃଥକତ୍ୱେନ ତୁ ଯଜ୍‌ଜ୍ଞାନଂ ନାନା ଭାବାନ୍ ପୃଥଗ୍ ବିଧାନ୍ ।
ବେତ୍ତି ସର୍ବେଷୁ ଭୂତେଷୁ ତଜ୍‌ଜ୍ଞାନଂ ବିଦ୍ଧି ରାଜସମ୍ ॥"

ସୂକ୍ଷ୍ମ, ସ୍ଥୂଳ, ବ୍ୟଷ୍ଟି, ସମଷ୍ଟି ଭେଦରେ ଓ ନାନାତ୍ୱ ମଧ୍ୟରେ ଏକତ୍ୱ ଦର୍ଶନ ହିଁ ପ୍ରକୃତ ଜ୍ଞାନ ଏବଂ ତାହାହିଁ ମିଷ୍ଟିକ୍‌ର ଚରମ ଅନୁଭୂତି । ଅର୍ଥାତ୍ ଯାହା ପ୍ରତ୍ୟକ୍ଷ ଓ ଅପ୍ରତ୍ୟକ୍ଷଭୂତ ତା' ବାହାରେ ଇନ୍ଦ୍ରିୟାତୀତ ଆବେଗସମ୍ଭୂତ ସତ୍ୟ ଓ ସମନ୍ୱୟର ଦର୍ଶନ ଓ ଉନ୍ମୋଚନ ମିଷ୍ଟିସିଜମ୍‌ର ଏକାନ୍ତ ଧର୍ମ । କେବଳ ସୃଷ୍ଟିର ରହସ୍ୟମୟ ବୈଚିତ୍ର୍ୟକୁ ଅନୁଭବ କରିବା ବା ଜୀବନର ରହସ୍ୟଦ୍ୱାରା ଅଭିଭୂତ ହେବା, ମିଷ୍ଟିସିଜମ୍ ନୁହେଁ । ସୃଷ୍ଟି ଓ ଜୀବନର ସଙ୍ଗେ ଯେଉଁ ଅବିଚ୍ଛିନ୍ନ ସଂପର୍କ ଓ ସମନ୍ୱୟ ତା' ଉପଲବ୍ଧି କରି ଅନ୍ତରାତ୍ମା ସ୍ତରରେ ଆତ୍ମିକ, ଆଧିଭୌତିକ ଓ ଆଧ୍ୟାତ୍ମିକ ସତ୍ୟର ଚେତନା ହିଁ ମିଷ୍ଟିକ୍‌ର ଆବେଗପୂର୍ଣ୍ଣ ଉଚ୍ଛ୍ୱସିତ ଅନୁଭୂତି । ତେଣୁ Quarles ଏହି ଅନୁଭୂତିକୁ ବର୍ଣ୍ଣନା କରିବାକୁ ଯାଇ କହିଛନ୍ତି—"Knowledge ·········must exempt /All carnall sense·····Reason must release / Her power ; / fancy must be found to peace. Thy spirits must be raped·········must forget thyself. Plotinsଙ୍କ ଭାଷାରେ ଏହା ଆତ୍ମାର ଅଦ୍ୱିତୀୟ, ଅବର୍ଣ୍ଣନୀୟ ଓ ସର୍ବୋତ୍କୃଷ୍ଟ ଅଭିଯାନ the flight of the Alone to the Alone.ଜୀବାତ୍ମାର ପରମାତ୍ମା ସହିତ ସଂଯୋଗ ସ୍ଥାପନ ଏବଂ ଇଂରାଜି ସାହିତ୍ୟର ଜଣେ ବିଶିଷ୍ଟ ମିଷ୍ଟିକକବି WordsWorthଙ୍କ ଭାଷାରେ ······gently did my soul/put off her veil, and, self-tansmutedstood /Naked in the presence of her God."

ଅନନ୍ତ ଅସୀମ, ଶାନ୍ତ ଓ ପରମ ତୃପ୍ତି ଅନୁଭବ, ଯାହା ଅଦୃଶ୍ୟ, ପାର୍ଥିବ ଅନୁଭବର ଅତୀତ ଓ ଅବର୍ଣ୍ଣନୀୟ ତା'ର ଦର୍ଶନ ଲାଭରେ ଏ ଅବସ୍ଥାର ଚରମ ପରିଣତି । Bronte ଏହି ଉଚ୍ଛ୍ୱସିତ ଆନନ୍ଦକୁ ବର୍ଣ୍ଣନା କରିବାକୁ ଯାଇ କହିଛନ୍ତି ,

... a hush of peace, a soundless calm descends—

× × × ×

Then dawns the Invisible, the unseen its truth reveal
My outward senses gone, my inward essence feels.

ମିଷ୍ଟିକ୍‌ର ଅନୁଭୂତି ଏକ ବିଶିଷ୍ଟ, ଅବର୍ଣ୍ଣନୀୟ, ଗଭୀର ଅନ୍ତର୍ନୁଭୂତି ଏବଂ ଏହି ଅନୁଭୂତିକୁ ବିଜ୍ଞାନ ବା ତର୍କଶାସ୍ତ୍ର ସାହାଯ୍ୟରେ ବିଶ୍ଳେଷଣ କରାଯାଇ ପାରିବନାହିଁ, କାରଣ ଏହା ଇନ୍ଦ୍ରିୟାଦି ଧୃତି ଓ ବୌଦ୍ଧିକ ପ୍ରଚେଷ୍ଟାର ଅନ୍ତର୍ଗତ ନୁହେଁ । ଏ ଅନୁଭୂତି ଆତ୍ମାର ଅମରତ୍ୱରେ ବିଶ୍ୱାସ କରେ ଏବଂ ଅନନ୍ତ ଅଦୃଶ୍ୟର ସହିତ ସଂପର୍କ ସୃଷ୍ଟି କରି ସନାତନ ଓ ସତ୍ୟର ଦର୍ଶନ ଲାଭ କରେ ।

ଭାରତୀୟ ବିଶ୍ୱାସର ବ୍ରହ୍ମବାଦ ଓ ଇଂରାଜ ମିଷ୍ଟିସିଜମ୍‌କୁ ସ୍ଥୂଳତଃ ସମାନ ଅର୍ଥରେ ନିଆଯାଇ ଥାଏ । ଉପନିଷଦ୍ ଅନୁସାରେ ବ୍ରହ୍ମ ହିଁ କେବଳ ସତ୍ୟ—ସର୍ବଂବ୍ରହ୍ମମୟଂ ଜଗତ୍ । ତେଣୁ ଯାହା ଭୌତିକ ଓ ପାର୍ଥିବ ତାହା ନଶ୍ୱର ଓ ମିଥ୍ୟା ; ତେଣୁ ସର୍ବଦା ବର୍ଜନୀୟ । ଭାରତୀୟ ମିଷ୍ଟିସିଜମ୍‌ର ମୂଳ ବିଶ୍ୱାସ ଆତ୍ମାବୋଧ ଓ ଅନ୍ତର୍ଦୃଷ୍ଟି । କିନ୍ତୁ ଖ୍ରୀଷ୍ଟିଆନ୍ ମିଷ୍ଟିସିଜମ୍ ଅନୁସାରେ ଶରୀରର ଯଥେଷ୍ଟ ପ୍ରାଧାନ୍ୟ ରହିଛି, କାରଣ ସୃଷ୍ଟିକର୍ତ୍ତା ପରମେଶ୍ୱର ସ୍ୱୟଂ ମନୁଷ୍ୟ ଦେହ ଧାରଣକରି ଯୀଶୁଖ୍ରୀଷ୍ଟରୂପେ ସଂସାରରେ ଅବତୀର୍ଣ୍ଣ ହୋଇଥିଲେ । ରାମାନନ୍ଦ, କବିର ଓ ଭକ୍ତିବାଦୀଙ୍କ ମିଷ୍ଟି-ସିଜମ୍‌ରେ ମନୁଷ୍ୟକୁ ଈଶ୍ୱରଙ୍କ ସର୍ବୋତ୍କୃଷ୍ଟ ସୃଷ୍ଟିରୂପେ ବିଶ୍ୱାସ

କରାଯାଇଛି । 'ବୌଦ୍ଧଗାନ୍ ଓ ବାଇବେଲର "Song of-Solomon"ର ମିଷ୍ଟିସିଜମ୍‌ର ଯଥେଷ୍ଟ ସାମ୍ୟ ରହିଛି । Plotinusଙ୍କ ଲେଖାରେ ପ୍ରାଚ୍ୟର ଏହି ମିଷ୍ଟିସିଜମ୍‌ର ଏବଂ ପାଶ୍ଚାତ୍ୟ ଗ୍ରୀକ୍, ଇଜିପ୍ଟ ଏବଂ ପ୍ଲେଟୋନିକ ରହସ୍ୟବାଦର ସମିଶ୍ରଣ ପରିଲକ୍ଷିତ ହୋଇଥାଏ ।

ଇଂରାଜି ସାହିତ୍ୟର ଇତିହାସରେ ମିଷ୍ଟିସିଜମ୍‌ର ପ୍ରଭାବ ଅତ୍ୟନ୍ତ ପୁରାତନ ଓ ଗୁରୁତ୍ୱପୂର୍ଣ୍ଣ । Beowalf, Caedmon ଇତ୍ୟାଦି ପୌରାଣିକ ଲେଖାମାନଙ୍କରେ ଈଶ୍ୱର ଓ ସୟତାନର ଯୁଦ୍ଧକୁ ରହସ୍ୟମୟ ଭାବରେ ବର୍ଣ୍ଣନା କରାଯାଇଛି । କିନ୍ତୁ ଏଗୁଡ଼ିକରେ ଲାଟିନ୍ ସାହିତ୍ୟର ବିଶେଷ ଛାପ୍ ପଡ଼ିଛି । ତ୍ରୟୋଦଶ ଶତାବ୍ଦୀରେ ବିଶ୍ୱବିଦ୍ୟାଳୟ ଗୁଡ଼ିକର ପ୍ରତିଷ୍ଠା ପରେ Scotus ଓ Matthew Praisଙ୍କ ପରି କେତେଜଣ ବିଶିଷ୍ଟ ରହସ୍ୟବାଦୀଙ୍କର ଆବିର୍ଭାବ ହୋଇଥିଲା । ଏହି ସମୟରେ Ancren Riwale ଓ 'Poema Morale' ପ୍ରଭୃତି ମିଷ୍ଟିକ କବିତାଗୁଡ଼ିକ ଲେଖାହୋଇଥିଲା । ଫ୍ରାନ୍‌ସ, ଇଟାଲି ଓ ସ୍ପେନ୍ ପ୍ରଭୃତି ଦେଶମାନଙ୍କର Teutonic ଓ Celtic ପ୍ରଭାବ ଇଂରାଜି ସାହିତ୍ୟକୁ ବଳିଷ୍ଠ କରିଥିଲା । Langlandଙ୍କର 'Piers Plowman'ରେ ରହସ୍ୟବାଦ ଓ ଧର୍ମବୋଧର ସଂମିଶ୍ରଣରେ ସମକାଳୀନ ଏକ ସାମାଜିକ ଅବସ୍ଥାର ଚିତ୍ର ମିଳେ । ଏହି ସମୟର ମିଷ୍ଟିକ୍ ରଚନାଗୁଡ଼ିକରେ ନୀତିକଥା, ରୂପକ ଓ ମିଷ୍ଟିସିଜମ୍‌ର ସମନ୍ୱୟ ଘଟିଛି । ତତ୍କାଳୀନ କାଥୋଲିକ୍ ଧର୍ମର ପ୍ରଭାବ ଯୋଗୁ ଏ ସମୟରେ ରହସ୍ୟବାଦର ଏକ ନିର୍ଦ୍ଦିଷ୍ଟ ତାତ୍ତ୍ୱିକ ବିଚାରଧାରା ଦେଖା ଦେଇଥିଲା । ତାହା St. Thomas Acquinus, St. Francis ଓ ଦାନ୍ତେଙ୍କ ଲେଖାରେ ପରିଲକ୍ଷିତ ।

ଚତୁର୍ଦ୍ଦଶ ଶତାବ୍ଦୀରେ Prichand Rolle ଏବଂ Julian of Norwichଙ୍କ ଉତ୍କୃଷ୍ଟ ଧରଣର ରହସ୍ୟବାଦୀ କବିତାଗୁଚ୍ଛ ଆମର ଦୃଷ୍ଟି ଆକର୍ଷଣ କରେ । ଅଷ୍ଟାଦଶ ଶତାବ୍ଦୀର ଦାର୍ଶନିକ ସ୍ୱିଡ଼େନବର୍ଗଙ୍କ ପରି ଏ ସମୟର ରହସ୍ୟବାଦୀମାନେ ଆଧିଭୌତିକ ଏବଂ ଆଧ୍ୟାତ୍ମିକ ବାସ୍ତବତାକୁ ସ୍ୱୀକାର କରୁଥିଲେ । ତେଣୁ ସେ ସମୟର ଲେଖାଗୁଡ଼ିକ ଭକ୍ତିମୂଳକ । ମଧ୍ୟଯୁଗର ମିଷ୍ଟିକ ଲେଖାର ମୂଳକଥା ହେଉଛି ମନୁଷ୍ୟର ଆତ୍ମାର ଅସ୍ଥିରତା ଏବଂ ପରମାତ୍ମାଙ୍କ ନିକଟରେ ଏ ଅସ୍ଥିରତାର କ୍ଷୟ ସହିତ ଏକ ପରମ ଶାନ୍ତିର ଅନୁଭବ । ତା ଛଡ଼ା ମନୁଷ୍ୟର ଆତ୍ମା ପ୍ରତି ପରମାତ୍ମାଙ୍କର ପ୍ରବଳ ଏବଂ ଅବିଚ୍ଛିନ୍ନ ବ୍ୟାକୁଳତା ଓ ଆକାଂକ୍ଷା । ଆଧୁନିକ ଯୁଗର କବି Francis Thompson ଙ୍କର "The Hound of Heaven" କବିତାରେ ଏ ଭାବ ପରିସ୍ଫୁଟ । ବାଇବେଲର "Songs of Solomon" ଦୃଢ଼ ପ୍ରଭାବରେ ଏ ଯୁଗର ଭକ୍ତି ଓ ଧର୍ମମୂଳକ ଲେଖାମାନଙ୍କରେ ଏକ ପ୍ରକାର ପ୍ରେମ ଭକ୍ତିମୂଳକ ରହସ୍ୟବାଦ ଦେଖା ଦେଇଥିଲା । ଭାରତୀୟ ରହସ୍ୟବାଦରେ ଏ ଧରଣର ମିଷ୍ଟିସିଜମ୍‌କୁ ମାଧୁର୍ଯ୍ୟରସ ବୋଲି କୁହାଯାଏ । ଏ ସମୟର Hales ପ୍ରଭୃତି କେଥୋଲିକ ରହସ୍ୟବାଦୀଙ୍କ କବିତାରେ ଏ ଧରଣର ରହସ୍ୟବାଦ ଅନୁଭବ କରାଯାଏ । ଏହାର ଅର୍ଥ, ମଣିଷର ଆତ୍ମା ନାରୀ ରୂପରେ ତା'ର ଆତ୍ମାର ପରମ ପ୍ରେମିକ ଖ୍ରୀଷ୍ଟଙ୍କୁ ବ୍ୟଗ୍ର ଏବଂ ବ୍ୟାକୁଳ ଭାବରେ ଅନ୍ୱେଷଣ ଏବଂ ଅନୁସରଣ କରେ । Richard Rolle ଏବଂ Lady Julianଙ୍କ ଲେଖାରେ ଏ ଧରଣର ରହସ୍ୟବାଦୀ ଭକ୍ତି ଦେଖାଯାଇ ଥାଏ । ରୋଲଙ୍କ ଭାଷାରେ, "From plenitude of inward sweetness I burst forth...alone before my Maker" ଏବଂ ଏହି ଅବସ୍ଥାରେ ତାଙ୍କର "ପ୍ରଜ୍ୱଳିତ ପ୍ରେମ

ମୂର୍ଚ୍ଛନାମସ୍ତ ହୋଇ ଉଠେ ।” ଏ ଦୁହିଁଙ୍କର ଭକ୍ତିମୂଳକ ଲେଖା-ଗୁଡ଼ିକ Crashaw, Patmore ଏବଂ Thompson ପ୍ରଭୃତିଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଥିଲା ।

ପଞ୍ଚଦଶ ଶତାବ୍ଦୀର କବି Spenserଙ୍କର ଲେଖାରେ ମଧ୍ୟ ମିଷ୍ଟିସିଜମ୍ ଦେଖାଯାଇଥାଏ, ବିଶେଷ କରି ତାଙ୍କର "Four Hymns to Love and Beauty" ପ୍ରଭୃତି କବିତାମାନଙ୍କରେ ପ୍ରେମ ଓ ସୌନ୍ଦର୍ଯ୍ୟ ବିଷୟରେ ଲେଖିବାକୁ ଯାଇ କବି ରହସ୍ୟ-ବାଦର ସ୍ତରକୁ ସ୍ପର୍ଶ କରିଅଛନ୍ତି । କବିଙ୍କର ପ୍ରେମ ଏବଂ ସୌନ୍ଦର୍ଯ୍ୟ-ବୋଧ Platonic ବା Neo. Platonic ଚିନ୍ତାଧାରାଦ୍ୱାରା ପ୍ରଭାବିତ ନ ହୋଇ ଖ୍ରୀଷ୍ଟିୟାନ୍ ମିଷ୍ଟିସିଜମ୍‌ର ପ୍ରେମ ଓ ସୌନ୍ଦର୍ଯ୍ୟବୋଧକୁ ରୂପାୟିତ କରିଛି । ସ୍ପେନସର ଏହି ପ୍ରେମ ଓ ସୌନ୍ଦର୍ଯ୍ୟର ଅନୁଧ୍ୟାନରେ ଅନନ୍ତ ବ୍ରହ୍ମଙ୍କର ପ୍ରତିଫଳନ ଦର୍ଶନ କରିଛନ୍ତି । "Faery Queene"ର ବିଭିନ୍ନ ପଦରେ ଏହି ଧରଣର ମିଷ୍ଟିକ୍ ଧର୍ମବୋଧ ପରିଲକ୍ଷିତ । ସ୍ପେନସରଙ୍କର ଯୁଗ ଏହି ଧରଣର ଚେତନା ପାଇଁ ବିଶେଷ ଉପଯୋଗୀ ଥିଲା । ତେଣୁ ଆମ୍ଭେମାନେ Milton, Taylor ଓ Browne ପ୍ରଭୃତି ଲେଖକମାନଙ୍କର ଗଦ୍ୟରଚନାରେ ଅତି ଉଚ୍ଚକୋଟୀର ଗଭୀର ଭାବୋଚ୍ଛ୍ୱାସ ଅନୁଭବ କରୁଁ । ସୃଷ୍ଟିର ବୈଚିତ୍ର୍ୟ ଓ ବୈଭବର ସଂଦର୍ଶନରେ ବା ଧର୍ମାନୁଷ୍ଠାନ ସମ୍ବନ୍ଧରେ ଚିନ୍ତା କଲାବେଳେ Browneଙ୍କର ଭାବୋଚ୍ଛ୍ୱାସ ରହସ୍ୟବାଦର ସ୍ତରରେ ଉପନୀତ ହୋଇଥାଏ । ତାଙ୍କର "Religio Medici" ପୁସ୍ତକର ପ୍ରତ୍ୟେକ ପୃଷ୍ଠାରେ ପାଠକ ଏହାହିଁ ଅନୁଭବ କରେ । ଯଥା, 'inorganity of the Soul'ସମ୍ବନ୍ଧରେ କହିବାକୁଯାଇ ସେ ଲେଖିଛନ୍ତି — "Thus we are men, and we know not how, there is something in us that can be without us and will

be after us, though it is strange that it hath no history what it was before us, cannot tell how entered in us." ଇତ୍ୟାଦି ।

ଷୋଡ଼ଶ ଶତାବ୍ଦୀର ବିରାଟ ଧର୍ମବିପ୍ଳବ Reformation ଠାରେ ସପ୍ତଦଶ ଶତାବ୍ଦୀରେ ବହୁଳଭାବରେ ମିଷ୍ଟିକ ଭାବ ସମ୍ବଳିତ କାବ୍ୟ ଏବଂ କବିତା ରଚିତ ହୋଇଥିଲା । George, Fox ପ୍ରଭୃତି Quakerମାନେ ସେମାନଙ୍କ "Journals" ପ୍ରଭୃତି ଗଦ୍ୟଲେଖା ମାନଙ୍କରେ ଗଭୀର ଧର୍ମବୋଧ ତଥା ମିଷ୍ଟିସିଜମ୍‌କୁ ପ୍ରକାଶ କରିଥିଲେ । Platoଙ୍କ ଦର୍ଶନଦ୍ୱାରା ପ୍ରଭାବିତ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର Henry More, John Smith, John Norris ପ୍ରଭୃତିଏ ଯୁଗର ବିଶିଷ୍ଟ ମିଷ୍ଟିକ ଗଦ୍ୟଲେଖକ । ବିଶେଷ କରି John Norris ଏ ଯୁଗର ଜଣେ ଉତ୍କୃଷ୍ଟ ମିଷ୍ଟିକ୍ ଗଦ୍ୟଲେଖକ । କିନ୍ତୁ ଏ ସମୟର କବିତାରେ ଏ ଯୁଗର ମିଷ୍ଟିସିଜମ୍‌ର ଚୂଡ଼ାନ୍ତ ନିଦର୍ଶନ ମିଳେ । Donne, Herbet, Crashard, Vaughan ପ୍ରଭୃତି କବିମାନଙ୍କୁ Metaphysicals ଆଖ୍ୟା ଦିଆଯାଇଛି । ବୋଧହୁଏ ଏହି କବି-ମାନଙ୍କର ଆଧିଭୌତିକ ବିଶ୍ୱାସ ତାଙ୍କର ରହସ୍ୟବାଦକୁ ପରିପୁଷ୍ଟ କରିଥିଲା । ଏହି କବିମାନେ ପ୍ରଧାନତଃ ଖ୍ରୀଷ୍ଟିୟାନ ମିଷ୍ଟିସିଜମ୍‌ରେ ବିଶ୍ୱାସ କରୁଥିଲେ ମଧ୍ୟ ସାମୟିକ ଭାବରେ ସେମାନଙ୍କ ଲେଖାରେ Neo-Platonic ମିଷ୍ଟିସିଜମ୍‌ର ଆଭାସ ମିଳେ । Donne, Crashaw, Vaughan, Herbert ପ୍ରଭୃତି କବିମାନଙ୍କର ଲେଖାରେ ଧାର୍ମିକ, ଦାର୍ଶନିକ ଓ ମହାଜାଗତିକ (Cosmic) ମିଷ୍ଟିସିଜମ୍ ଲକ୍ଷ୍ୟ କରାଯାଇପାରେ । Donneଙ୍କ "Holy Sonnets" ମାନଙ୍କରେ ଗଭୀର ଧର୍ମବୋଧ ଏବଂ ରହସ୍ୟବାଦର ଅପୂର୍ବ ସଂମିଶ୍ରଣ ତାଙ୍କର ଭାଷାକୁ ନିର୍ଦ୍ଦିଷ୍ଟ ଭାବରେ ବଳିଷ୍ଠ ଓ ସାବଲୀଳ

କରିଛି । "The Progress of the Soul", "Hymn to God" "Second Anniversary" ପ୍ରଭୃତି କବିତାର ଛନ୍ଦରେ ମଧ୍ୟ ରହସ୍ୟବାଦର ଆବେଗ ଅନୁଭୂତ ହୁଏ । ରହସ୍ୟବାଦୀ ଭାବୋଚ୍ଛ୍ୱାସ ଅନୁଭବରେ ଆତ୍ମାର ଅପୂର୍ବ ଆନନ୍ଦ ତାଙ୍କର "Ecstasy" କବିତାରେ ଅଭିବ୍ୟକ୍ତ । କିନ୍ତୁ ତାଙ୍କର ପ୍ରେମ-କବିତାଗୁଡ଼ିକରେ ମଧ୍ୟ ଗଭୀର ରହସ୍ୟବାଦଜନିତ ଉଚ୍ଛ୍ୱାସ ସମଭାବରେ ପ୍ରକାଶଲାଭ କରେ । Herbert ଜଣେ ରହସ୍ୟବାଦୀ ଯୋଗ-ସାଧକ । "Easter Song", "Love", "The Collar" ଏବଂ "Clasping of Hands" ପ୍ରଭୃତି କବିତାମାନଙ୍କରେ ସେହି ପରମାତ୍ମାଙ୍କ ସହିତ ସଂପର୍କ ଓ ସଂଯୋଗ ସ୍ଥାପନ ଲାଗି କବିଙ୍କର ସ୍ୱଆତ୍ମାର ବ୍ୟାକୁଳତା ରହସ୍ୟବାଦ ମଧ୍ୟଦେଇ ପ୍ରକାଶଲାଭ କରିଛି । ଏହି ବିହ୍ୱଳ ଅବସ୍ଥାରେ ସେ ଶୁଣିବାକୁ ପାଇଥିଲେ "...heard some one calling child/And I replied 'my Lord !' (Love) ଏବଂ "Clasping of Hands"ରେ ସେ ଯେତେବେଳେ ସେହି ଅପୂର୍ବ ସାତ୍ତ୍ୱିକ ଜ୍ଞାନ ଲାଭ କରିଛନ୍ତି ସେତେବେଳେ 'Thine and mine' ବ୍ୟବଧାନ ଅପସରି ଯାଇଛି ଏବଂ ତାଙ୍କ ପକ୍ଷରେ "All is Gods" ଓ କରମର୍ଦ୍ଦନର ଏହି ଅଭୂତପୂର୍ବ ମୁହୂର୍ତ୍ତରେ ସେ ଭଗବାନଙ୍କ ସ୍ପର୍ଶ ଲାଭ କରି ପାରିଛନ୍ତି । Traherneଙ୍କ ମିଷ୍ଟିସିଜମ୍‌ରେ ଏକ ନିର୍ଦ୍ଦିଷ୍ଟ ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୁଏ । ସେ ରୋମାଣ୍ଟିକ କବି ଶେଲିଙ୍କ ପରି ଅନୁଭବ କରନ୍ତି ଯେ ମନୁଷ୍ୟର ଅନ୍ତରାତ୍ମାରେ ଏକ ଅନନ୍ତ ପରମାଣୁ ନିହିତ ଅଛି ଏବଂ ତାହା 'inextinguishable light'ର କିଞ୍ଚିତ ଅଂଶ ମାତ୍ର । ସୃଷ୍ଟିର ବୈଚିତ୍ର୍ୟରେ ସେ ଦେଖିବାକୁ ପାଆନ୍ତି 'A strange extended orb of joy' ଏବଂ ତାହା ଭଗବତ୍ ଆନନ୍ଦ ଏବଂ ଅନ୍ତରର ଗଭୀରତମ ପ୍ରଦେଶରୁ ନିର୍ଗତ । Traerne-

ଙ୍କର ମିଷ୍ଟିକ୍ ଅନୁଭୂତିର ସୁନ୍ଦର ବର୍ଣ୍ଣନା 'Wonder' କବିତାରେ ମିଳେ—

The world resembled his eternity
In which did my soul walk
And everything that I did see,
Did with me walk……

ଏବଂ Great wonders clothed with glory did appear
ଓ Amazement was my bliss.

"The Vision" କବିତାରେ ସେ ଭଗବାନଙ୍କୁ ସଦ୍ୟ ସାକ୍ଷାତ କରିଥିଲେ । Traherneଙ୍କର ଭାବ, ଭଙ୍ଗୀ, ରୂପକଳ୍ପ ସମସ୍ତ ଏହି ମିଷ୍ଟିକ୍ ବିଶ୍ୱାସରେ ପୂର୍ଣ୍ଣ । କିନ୍ତୁ ତାଙ୍କର "Meditatins" ନାମକ ଗଦ୍ୟ ଲେଖାରେ ଆମେ ତାଙ୍କର ଯେଉଁ ମିଷ୍ଟିସିଜମ୍ ଦେଖୁଁ ତାହା ଇଂରାଜ ସାହିତ୍ୟରେ ଅତି ଉତ୍କୃଷ୍ଟ ଧରଣର । ଇଂରାଜ ଗଦ୍ୟସାହିତରେ ଏ ଧରଣ ଲେଖା ବିରଳ । Vanghan, Traherneଙ୍କ ପରି ଆଲୋକ-ଧର୍ମୀ । ତାଙ୍କ ଭାଷାରେ—"I saw eternity the other night/Like a great ring of pure and endless light" ସେ ପୁଣି କହନ୍ତି ଯେ, "I saw God crowned with eternity" ମିଲନ୍ଙ୍କ ପରି ସେ ମନୁଷ୍ୟ ଏବଂ ଈଶ୍ୱରଙ୍କ ମଧ୍ୟରେ କୌଣସି ବ୍ୟବଧାନ ଦେଖି ପାରୁନଥିଲେ । ତେଣୁ ସେ ପରମାତ୍ମାଙ୍କ ସହିତ ସଂଯୋଗ ଓ ସଂପର୍କ ପାଇଁ ସର୍ବଦା ବ୍ୟାକୁଳ । ଦାନ୍ତେଙ୍କ ପରି ସେ ଅନୁଭବ କରନ୍ତି ଯେ, "The noble soul returns to God as to the harbour whence it set out, when it embarked upon the sea of life." 'ପ୍ରକୃତି'ର ରହସ୍ୟମୟ ଅଭିବ୍ୟକ୍ତିରେ Vanghan ଓ WordsWorthଙ୍କ ମଧ୍ୟରେ ଯଥେଷ୍ଟ ସାମ୍ୟ ପରି ଲକ୍ଷିତ ହୁଏ ଏବଂ Vanghanଙ୍କ "The World" "Retre at

'Quickness" ପ୍ରଭୃତି କବିତାରେ ଏହା ପ୍ରତିପାଦିତ । କିନ୍ତୁ ଏ ଯୁଗର Crashaw ମଧ୍ୟଯୁଗର ମିଷ୍ଟିକ୍ ଧର୍ମବୋଧଦ୍ୱାରା ଯଥେଷ୍ଟ ପ୍ରଭାବିତ । "A Song" କବିତାରେ ସେ ତାଙ୍କର ଏହି ମିଷ୍ଟିକ୍ ଭାବକୁ ବର୍ଣ୍ଣନା କରି କହିଛନ୍ତି ଯେ "Sense of thy sweet grace sends up my soul to scale thy face" ଏବଂ "Love's Delicious Fire"ରେ ସେ ସଦା ଭସ୍ମୀଭୂତ ହୋଇ ପରମାତ୍ମାଙ୍କର ପରମ ଶାନ୍ତି, ପ୍ରେମ, ସମନ୍ୱୟ ଓ ଐକ୍ୟ ଅନୁଭବ କରନ୍ତି— "Dead to myself, I live in thee"

ଖ୍ରୀ: ୧୬୯୫ ପରେ ପ୍ରାୟ ପଚାଶ ବର୍ଷ ଧରି ମିଷ୍ଟିସିଜମ୍‌ର ପ୍ରାଧାନ୍ୟର ହ୍ରାସ ଘଟିଥିଲା । ତେଣୁ କୌଣସି ରହସ୍ୟବାଦୀ କବିତାର ସଂକଳନରେ ଏ ସମୟର ମାତ୍ର ଚାରି ପାଞ୍ଚୋଟି କବିତା ପରିପୁଷ୍ଟ ହୁଏ । Isaac Watts ଏବଂ Cowperଙ୍କ ବ୍ୟତୀତ ବିଶେଷ କେହି କବିଙ୍କର ଆବିର୍ଭାବ ହୋଇ ନଥିଲା ; କିନ୍ତୁ William Lawଙ୍କର ଗଦ୍ୟଲେଖା ଏଠାରେ ଉଲ୍ଲେଖଯୋଗ୍ୟ । Jacob Boehmeଙ୍କ ଲେଖା ସହିତ ତାଙ୍କ ଲେଖାର ବହୁ ସାଦୃଶ୍ୟ ପରିଦୃଷ୍ଟ । ଅଷ୍ଟାଦଶ ଶତାବ୍ଦୀର ହେତୁବାଦ, ବୈଜ୍ଞାନିକ ଦର୍ଶନବାଦ ଓ ଜଡ଼ବାଦର ପ୍ରଭାବ ମିଷ୍ଟିସିଜମ୍ ପକ୍ଷରେ ଆଦୌ ଆନୁକୂଲ ହୋଇ ନ ଥିବାରୁ ଏ ଶତାବ୍ଦୀରେ ଏହି ଧରଣର ଲେଖା ଏତେ ବିରଳ ।

କିନ୍ତୁ ଏହା ପରେ ପରେ ଇଂରାଜୀ ସାହିତ୍ୟରେ ରୋମାଣ୍ଟିକ ଯୁଗର ଆରମ୍ଭ ହୁଏ । ଏ ଯୁଗର ବଳିଷ୍ଠ ଆଦର୍ଶବାଦ, ଗଭୀର କଳ୍ପନାବିଳାସ ଓ ଅଲୌକିକ ଭାବବିହ୍ୱଳତା ମିଷ୍ଟିସିଜମ୍ ପାଇଁ ବିଶେଷ ଉପଯୋଗୀ ହୋଇ ପାରିଥିଲା । ଏକ 'ultimate Idea' ବା 'Supreme Reality' ଯେ ସାରା ସୃଷ୍ଟିରେ ବ୍ୟାପ୍ତ— ପ୍ଲେଟୋଙ୍କର ସୃଷ୍ଟି ସମ୍ବନ୍ଧୀୟ ଏ ଧାରଣା ସମସ୍ତ ରୋମାଣ୍ଟିକ

କବିମାନଙ୍କୁ ଅନୁପ୍ରାଣିତ କରିଥିଲା । ଏ ଯୁଗର William Blake ଏବଂ William WordsWorth ଇଂରାଜ ସାହିତ୍ୟର ଦୁଇଜଣ ଶ୍ରେଷ୍ଠ ମିଷ୍ଟିକ୍ କବି । କଳ୍ପନାର ବ୍ୟାଖ୍ୟା କରିବାକୁ ଯାଇ Colenger ଦର୍ଶାଇ ଥିଲେ ଯେ ପରସ୍ପରବିରୋଧି କେତେକ ଗୁଣ ମଧ୍ୟରେ ସ୍ୱରସାମ୍ୟ ଓ ସମନ୍ୱୟ ପ୍ରତିଷ୍ଠାତା ହିଁ କଳ୍ପନାର ସର୍ବଶ୍ରେଷ୍ଠ କାର୍ଯ୍ୟ । ତାଙ୍କର ଏ ବିଶ୍ୱାସ ଏ ଯୁଗର କବିମାନଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଥିଲା । Blake ଜଣେ ଖ୍ରୀଷ୍ଟିୟାନ୍ ରହସ୍ୟ-ବାଦୀ କବି, ମାତ୍ର ଅନୁଷ୍ଠାନିକ ରୀତିପଦ୍ଧତିମୂଳକ ଧର୍ମରେ ତାଙ୍କର ବିଶ୍ୱାସ ନ ଥିଲା । 'କଳ୍ପନା' କହିଲେ Blake ବୁଝୁଥିଲେ ଯେ ଏହା one great Reality······The Infinite and Eternal—The living power and Prime Agent of all human perceptions." ତେଣୁ ଏହି ଆଦର୍ଶବାଦ, ଦର୍ଶନ, ଅନ୍ତର୍ଦୃଷ୍ଟି ଓ ଅନୁକମ୍ପାକୁ ମଧ୍ୟ ବୁଝାଇ ଥାଏ । Blakeଙ୍କ ମତରେ ପ୍ରକୃତ ଜ୍ଞାନଓ ସୃଷ୍ଟିର ଦର୍ଶନବୋଧ ସମ୍ୟକ ଦର୍ଶନରୁ ଜାତ ହୁଏ । ଏହା ଜୈନ୍‌ଧର୍ମ ବୌଦ୍ଧଧର୍ମର ବା ଶଙ୍କରଙ୍କର ଆତ୍ମବୋଧ ଦର୍ଶନ ସହିତ ତୁଳନୀୟ । "the Songs of Innocences ଏବଂ the "Songs of Experience" କବିତାଗୁଡ଼ିକରେ ଆମେ ତାଙ୍କର ଗଭୀର କଳ୍ପନାବିଳାସ ଓ ସ୍ୱଜ୍ଞା (intuition) ଦେଖୁଁ । ତାହା Blakeଙ୍କ ମିଷ୍ଟିସିଜମ୍‌କୁ ଦାନ୍ତେଙ୍କ ମିଷ୍ଟିସିଜମ୍ ଅନୁରୂପ କରିଅଛି । ପରମାତ୍ମାଙ୍କ ସହିତ ଆତ୍ମାର ମିଳନରେ ମହାନନ୍ଦ ଅନୁଭବ କରିବା Blakeଙ୍କର ପରମ ଅନୁଭୂତି । Sweden beny, Bolhme ଏବଂ Paracelsus ପ୍ରଭୃତିଙ୍କଦ୍ୱାରା Blake ପ୍ରଭାବିତ; ତଥାପି Blakeଙ୍କର ମିଷ୍ଟିସିଜମ୍ ସମ୍ପୂର୍ଣ୍ଣ ଭାବରେ ତାଙ୍କର ନିଜସ୍ୱ । Blakeଙ୍କର ଏହି ସ୍ୱର୍ଗୀୟ ଉନ୍ମାଦନା (Divine madness) ଓ ଦିବ୍ୟାଲୋକ (illumintion)

ଆତ୍ମା ଓ ଜୀବାତ୍ମାର କୈବଲ୍ୟ ଓ ଐଶ୍ୱର୍ଯ୍ୟର ଶେଷ ପରିଣତି ଏବଂ ଏହି ଅବସ୍ଥାରେ ଭକ୍ତିସୂତ୍ରରେ ନାରଦ ଯେଉଁ ଅପୂର୍ବ ଆନନ୍ଦ ଓ ଆତ୍ମଦର୍ଶନ ବିଷୟରେ କହନ୍ତି ସେ ଅନୁଭୂତି Blakeଙ୍କର ଲେଖାରୁ ବିଶେଷ ଭାବରେ "the Prophetic Books"ରୁ ମିଳିଥାଏ । ତାଙ୍କ ନିଜ ଭାଷାରେ—

Terror Struck in the veil Istood at the immortal sound. My bones trembled.

"Songs of Innocence"ରେ ତାଙ୍କର ମିଷ୍ଟିସିଜମ୍ ପ୍ରାପ୍ତ ବୟସ୍କଙ୍କୁ ଦୁର୍ବୋଧ, ମାତ୍ର ଶିଶୁମାନଙ୍କ ପାଇଁ ସହଜରେ ବୋଧଗମ୍ୟ । ଶୈଶବର ଏହି ଭ୍ରାନ୍ତିହୀନ ଓ ମାୟାବିହୀନ ସ୍ୱତଃନିର୍ଗତ ଅନାବିଳ ପବିତ୍ର ଆବେଗ, ଜୀବନର ସବୁ ଦ୍ୱନ୍ଦ୍ୱ ଏବଂ ଦ୍ୱେଷର ସମାଧାନ ଏକ ଅପୂର୍ବ ଦର୍ଶନଦ୍ୱାରା କରିଥାଏ ଏବଂ ସେହି ଅବସ୍ଥାରେ ସମଗ୍ର ସୃଷ୍ଟି Blakeଙ୍କୁ କେବଳ "the worlds of happy eternity" ରୂପେ ପ୍ରତୀୟମାନ ହୁଏ । ସେ ତେଣୁ ଏହି ଅପୂର୍ବ ଦର୍ଶନ ଲାଭ କରନ୍ତି—

……a world in a grain of sand
And a heaven in a wild flower
Hold Infinity in a palm
And Eternity in an hour.

ସ୍ୱର୍ଗର ସୁବର୍ଣ୍ଣଦ୍ୱାର ତାଙ୍କ ପାଇଁ ଉନ୍ମୁକ୍ତ ହୋଇଉଠେ ଏବଂ "Soul in beautys form" ଏହି ଅନୁଭୂତି ପ୍ରକଟ ହୁଏ । ଏହା ଦାନ୍ତେଙ୍କର 'Paradiso' କବିତାର ଏକାନ୍ତ ଅନୁଭୂତି ।

ଓ୍ୱାର୍ଡ଼ସ୍‌ଓ୍ୱାର୍ଥ ଇଂରାଜୀ ସାହିତ୍ୟରେ 'ପ୍ରକୃତି'ର ସର୍ବଶ୍ରେଷ୍ଠ ମିଷ୍ଟିକ କବି । ପ୍ରକୃତିରେ ଓ୍ୱାର୍ଡ଼ସ୍‌ଓ୍ୱାର୍ଥ ଏକ ଗମ୍ଭୀର ଏବଂ ଶାନ୍ତ-ସମନ୍ୱୟର ମୂର୍ଚ୍ଛନା ଅନୁଭବ କରନ୍ତି । ପ୍ରକୃତି ସହିତ ତାଙ୍କର

ସପକ ତାଙ୍କ ପକ୍ଷରେ ଏକ ସ୍ୱର୍ଗୀୟ ଅନୁଭୂତି — a higher hour of visitation form the living God;" ସେତେବେଳେ ତାଙ୍କର ଆତ୍ମା ମହାନନ୍ଦ ଅନୁଭବ କରେ । ଏହା ତାଙ୍କର "the prelude" ଭୂମିକା ପୁସ୍ତକରେ ବିଶେଷ ଭାବରେ ପରିଲକ୍ଷିତ । ଓ୍ୱାର୍ଡ଼ସ୍‌ୱର୍ଥଙ୍କର ଏହି ଅନୁଭୂତି Richard Jefferus "the story of My Heart' ରେ ମିଳେ ଓ "Tintern Abbey"ରେ ଆମେ ଯେଉଁ ଅନୁଭବର ବର୍ଣ୍ଣନା ପାଉଁ ତାହାର ମିଷ୍ଟିକ Boehmeଙ୍କର ଅନୁଭୂତି ସହିତ ଯଥେଷ୍ଟ ସାମ୍ୟ ପରିଲକ୍ଷିତ ହୁଏ । ତାଙ୍କର "Immortality Ode"ରେ ମଧ୍ୟ ଏହି ଅନୁଭୂତିର ବର୍ଣ୍ଣନା ମିଳେ । ଯେତେବେଳେ କି ସମସ୍ତ ପ୍ରକାର ବାହ୍ୟିକ ଦ୍ୱନ୍ଦ୍ୱ ଏବଂ ଇନ୍ଦ୍ରିୟର ପ୍ରଶ୍ନର ବିଲୋପ ଘଟେ ଏବଂ ସେ "high instincts" ଦ୍ୱାରା ଉଦ୍‌ବୁଦ୍ଧ ହୋଇ ପଡ଼ନ୍ତି ଏବଂ "unknown modes of being"ରେ ସଂପୂର୍ଣ୍ଣ ଭାବରେ ନିଜକୁ ହଜାଇ ଦିଅନ୍ତି । ଏହା ତାଙ୍କର "blessed mood" when we are led asleep in body and see in to the life of things" ଏହି ସୁଷୁପ୍ତ ଅବସ୍ଥାରେ ଉପନିଷଦ୍ ଯେଉଁ ଶାଶ୍ୱତ ଓ ଅନନ୍ତବାସ୍ତବର ଗଭୀର ଆତ୍ମିକ ଅନୁଭୂତିର ବର୍ଣ୍ଣନା କରେ ଏବଂ ଯାହା ଆମେ St. John of the Cossଙ୍କର ଆବେଗମୟ ଲେଖାରୁ ପାଉଁ, ତାହା Words worthଙ୍କର ମଧ୍ୟ ଅନୁଭୂତି ।

ଶେଲି, କିଟସ୍ ପ୍ରଭୃତି ପରବର୍ତ୍ତୀ ରୋମାଣ୍ଟିକ କବିମାନେ ପ୍ରଧାନତଃ ସୌନ୍ଦର୍ଯ୍ୟ ଓ ପ୍ରେମର ଉପାସକ । ଶେଲି, ବ୍ଲେକଙ୍କ ପରି 'କଳ୍ପନା'କୁ 'a divine creative force' ବୋଲି ବିଶ୍ୱାସ କରନ୍ତି ଏବଂ Words Worth ଓ Blakeଙ୍କପରି 'a soul of the universe' an active principleରେ ବିଶ୍ୱାସ କରନ୍ତି ଏବଂ ଏହା ତାଙ୍କର "Prometheus Unbound" କାବ୍ୟରେ ଦେଖା

ଯାଏ । ଏହି କବିତାରେ ପ୍ରେମ ସମ୍ବନ୍ଧୀୟ ମିଷ୍ଟିସିଜମ୍‌ର ଚରମ ପରିପ୍ରକାଶ ଘଟିଅଛି । ତାଙ୍କର ଏହି ମିଷ୍ଟିକ ଅନୁଭୂତି; ପ୍ରେମ ଓ ସୌନ୍ଦର୍ଯ୍ୟ ପ୍ରତି ଏହି ରହସ୍ୟମୟ ଭାବ "Epipsychidion" କବିତାରେ ଅନୁଭବ କରାଯାଏ, ଯେଉଁଠି ସେ ନିଜର ଆତ୍ମା ଓ ବ୍ୟକ୍ତିତ୍ୱର 'ସୃଷ୍ଟିର ଆତ୍ମା' ସହିତ ମିଳନ ଇଚ୍ଛା କରନ୍ତି । କିନ୍ତୁ "Adonais" କବିତାରେ ତାଙ୍କର Platonic ଆଦର୍ଶବାଦ ଓ ରୋମାଣ୍ଟିକ୍ ଆବେଗକୁ ଏକ ମିଷ୍ଟିକ୍ ଅନୁଭୂତି ପରେ ପ୍ରକାଶ କରିଛନ୍ତି ।—

"The One remains, the many change and pass
Heavens light forever shines, earth's shadows fly···

କିଟସ୍ ତାଙ୍କର "Enpymion" କବିତାରେ ଏହି ମିଷ୍ଟିକ୍ ସୂଚନା ଦିଅନ୍ତି—

"···that moment have we slept
Into a sort of oneness and our state
Is like a floating spirit's······

ପ୍ରେମରେ ସମସ୍ତପ୍ରକାର ଅନୁଭୂତିର ସମନ୍ୱୟ ହିଁ Keatsଙ୍କର "Endymion" କବିତାର ମୂଳକଥା । ସୌନ୍ଦର୍ଯ୍ୟ ଓ ସତ୍ୟର ସମନ୍ୱୟ ବର୍ଣ୍ଣନା କରିବାକୁ ଯାଇ ସେ ସେହିପରି ତାଙ୍କର "Ode on a Greisan urn" କବିତାରେ ଲେଖିଛନ୍ତି—

"Beauty is truth truth beauty,—that is all
Ye know on earth, and all ye need to know.

ଜୀବନ ଓ ସୃଷ୍ଟିର ଐକ୍ୟ ବୋଧ "Hyperion" କବିତାରେ ପରିଦୃଷ୍ଟ । ଯାହା ଶାଶ୍ୱତ ଓ ଚିରନ୍ତନ ପରିବର୍ତ୍ତନରେ ତାହା କ୍ଷୟ ହୁଏ ନାହିଁ ବରଂ ଆତ୍ମା ଅଧିକତର ଭାବରେ ବିଭିନ୍ନ ରୂପରେ

ପ୍ରକାଶ ଲାଭ କରେ ଏବଂ ବିକସିତ ହୁଏ । କବିଙ୍କର ଏହି ବିଶ୍ୱାସ "Hyperion" କବିତାରେ Oceanusର ବକ୍ତୃତାରେ ପରିସ୍ଫୁଟ ।

Robert Browning ପ୍ରଧାନତଃ ଏକ ମିଷ୍ଟିକ୍ କବି । କିନ୍ତୁ ତାଙ୍କର ମିଷ୍ଟିସିଜମ୍ ଧର୍ମମୂଳକ, ରୋମାଣ୍ଟିକ କବିମାନଙ୍କ ପରି ଆଦର୍ଶବାଦୀ ନୁହେଁ । ସେ ସୃଷ୍ଟି ଓ ଜୀବନରେ 'ବହୁ' ମଧ୍ୟରେ 'ଏକ'ର, ବିଭିନ୍ନ ମଧ୍ୟରେ ଅଭିନ୍ନର ବିଶ୍ୱାସ କରୁଥିଲେ ଏବଂ ଗୃହଆଡ଼େ ସେହି ଅନନ୍ତ ଆତ୍ମାର ଉପସ୍ଥିତି ଅନୁଭବ କରୁଥିଲେ । 'Paracelsus', 'Christina', "A Death in the Desert" ପ୍ରଭୃତି କବିତାରେ Eckhartଙ୍କ ପରି ସେ ମନୁଷ୍ୟର potential divinity''ରେ ବିଶ୍ୱାସ କରନ୍ତି ଏବଂ ପ୍ରେମ ହିଁ ମନୁଷ୍ୟ ଓ ଈଶ୍ୱର ମଧ୍ୟରେ ଯୋଗସୂତ୍ର ବୋଲି ମାନନ୍ତି—

Holy, distrust thy knowledge, then, and trust
As wholly love allied to ignorance !
there lies thy truth and safety.

ଏହା ତାଙ୍କର ମିଷ୍ଟିକ୍ ଭାବର .ଏକ ଦୃଷ୍ଟାନ୍ତ । 'ସୁ' ଓ 'କୁ' ବିଜ୍ଞାନ ଓ ଧର୍ମ, ଦୈହିକ ପ୍ରେମ ଓ ଆତ୍ମିକ ପ୍ରେମ ପ୍ରଭୃତି ପରସ୍ପର ବିରୋଧି ଚିନ୍ତାମଧ୍ୟରେ ସମନ୍ୱୟ ସ୍ଥାପନ ଥିଲା Browningଙ୍କର ମିଷ୍ଟିସିଜମ୍‌ର ମୂଳ ଲକ୍ଷ୍ୟ । ତେଣୁ ସେ କହନ୍ତି—

Only by looking low ere looking high
Comes penetararation of the mystery.

"In Memoriam"ର କେତେକ ଅଂଶରେ ଏବଂ "The Ancient Sage"ରେ ଆମେ Tennysonଙ୍କର ମିଷ୍ଟିକ ଭାବ ଲକ୍ଷ୍ୟ କରୁଁ । "Holy Grail"ର ଶେଷ ପଂକ୍ତିଟି ମିଷ୍ଟିସିଜମରେ

ପରିପୂର୍ଣ୍ଣ । କିନ୍ତୁ Tennysonଙ୍କର ଏହି ମିଷ୍ଟିକ ଅନୁଭୂତି ଆବେଗ ପୂର୍ଣ୍ଣ ବା ଉଚ୍ଛ୍ୱାସ ସମ୍ଭୂତ ନୁହେଁ, ଏହା କେବଳ ତାଙ୍କର ଅଭିଜ୍ଞତାରୁ ଜାତ । "Ancient Sage"ରେ 'ବ୍ୟକ୍ତିତ୍ୱ'ର 'ବ୍ୟାପ୍ତି' ସହିତ ସମିଶ୍ରଣରେ, ପ୍ରାଚ୍ୟ ଦର୍ଶନ ଓ ରହସ୍ୟବାଦ ସହିତ ସାମ୍ୟ ରହିଛି ।

Rossetti, ବ୍ରାଉନିଙ୍ଗଙ୍କ ପରି ସୃଷ୍ଟିର ଜଟିଳତାଗୁଡ଼ିକର ସମାଧାନ କରିବାକୁ ଚାହିଁଥିଲେ । ତାଙ୍କର ମିଷ୍ଟିସିଜମ Patmoreଙ୍କ ପରି ପ୍ରେମ ଓ ସୌନ୍ଦର୍ଯ୍ୟର ଶକ୍ତି ଉପରେ ବିଶ୍ୱାସ ଦ୍ୱାରା ନିୟନ୍ତ୍ରିତ । ସୁଫି ବା ବୈଷ୍ଣବ ବା ସହଜିଆ ପ୍ରେମ ରହସ୍ୟବାଦୀଙ୍କ ପରି Rossetti ଓ Patmoreଙ୍କ ପାଖରେ ଆବେଗ ପୂର୍ଣ୍ଣ ମିଷ୍ଟିକ୍ ପ୍ରେମ ଅନୁଭବ କରାଯାଏ । Rossettiଙ୍କର "Hand and Soul" ଗଦ୍ୟ ଲେଖାରେ ତାଙ୍କ କବିତା ଅପେକ୍ଷା ଆହୁରି ଗଭୀର ଚିନ୍ତାଧାରା ବା ଭାବ ଅନୁଭବ କରାଯାଏ । ମନୁଷ୍ୟର ପ୍ରେମରେ ବା ବୈବାହିକ ପ୍ରେମରେ ପରମାତ୍ମାଙ୍କ ପ୍ରେମ ପ୍ରତିଷ୍ଠିତ ବୋଲି Patmoreଙ୍କ ବିଶ୍ୱାସ । ବାଇବେଲ୍‌ର "Songs of Solomon" ରେ ବା ଚଣ୍ଡୀ ଦାସଙ୍କର ବା Madame Bruyereଙ୍କ ଲେଖାରେ ଭଗବାନଙ୍କୁ ସ୍ୱାମୀରୂପେ ଏବଂ ନିଜକୁ ସ୍ତ୍ରୀରୂପେ କଳ୍ପନା କରି ଏକ ଆଧ୍ୟାତ୍ମିକ ସଂପର୍କ ସୃଷ୍ଟି କରାଯାଇଅଛି । Patmoreଙ୍କ ଏହି ଚିନ୍ତାଧାରା "The Precursors" ଓ "Angel in the House"ରେ ପୂର୍ଣ୍ଣ ଭାବରେ ଅନୁଭବ କରାଯାଏ ।

Female and male god made the men
His image is the whole, not half
And in our love we dimly & can
The love which is between himself.

Patmoreଙ୍କର "Sponsa Dei" ତାଙ୍କ ମିଷ୍ଟିସିଜମ୍‌ର ଏକ ସ୍ପଷ୍ଟ ଅଭିବ୍ୟକ୍ତି । ଆତ୍ମାର ସମସ୍ତ ଶାନ୍ତି ଏବଂ ସୁଖ ପରମାତ୍ମାଙ୍କର ସଙ୍ଗେ ନିବିଡ଼ ସଂପର୍କରୁ ଜାତ । ଏହା ତାଙ୍କ ଲେଖାର ମୂଳକଥା ।

Emiey Bronte ଅନ୍ୟ ମିଷ୍ଟିକମାନଙ୍କଠାରୁ ଯଥେଷ୍ଟ ଭିନ୍ନ । ଏକାଧାରରେ ସେ ସୃଷ୍ଟିରେ ନଶ୍ୱରତା ଏବଂ ମାୟାମୟ ଲୀଳା ଦେଖନ୍ତି ଏବଂ ତା ସଙ୍ଗେ ସଙ୍ଗେ ଶାଶ୍ୱତ ବାସ୍ତବକୁ ବି ଅନୁଭବ କରନ୍ତି । "The Prisoner", "The Visionery" ପ୍ରଭୃତି କବିତାରେ ସେ ଅନ୍ତସ୍ଥିତ ବା ନିଗୂଢ଼ ଜୀବନର ଏବଂ ଈଶ୍ୱରଙ୍କ ସହ ଅପୂର୍ବ ସଂପର୍କରେ ଯେଉଁ ମହାଆନନ୍ଦ ଓ ଶାନ୍ତି, ତାହା ବର୍ଣ୍ଣନା କରିଛନ୍ତି ।

Burke, Coleridge, Carlyle ପ୍ରଭୃତି ଲେଖକଙ୍କ ମଧ୍ୟରେ ଆମେ ଇଂରାଜି ଗଦ୍ୟ ସାହିତ୍ୟରେ ମିଷ୍ଟିସିଜମ୍‌ର ଭାବ ପ୍ରକାଶ ଦେଖୁଁ । ଏ ତିନି ଜଣ ଲେଖକ Boehme ଓ Lawଙ୍କ ଦ୍ୱାରା ଏବଂ ଜର୍ମାନ Transcendentalistମାନଙ୍କଦ୍ୱାରା ବିଶେଷ ଭାବରେ ଅନୁପ୍ରାଣିତ । Coleridgeଙ୍କ ଭାଷାରେ "There in one Mind, one Omnipresent Mind/Omnific. His most holy name is love" ଏବଂ "To know our self/Parts and proportions of one wonderous soul." ସେ ବିଶ୍ୱାସ କରନ୍ତି ଯେ ଏହା ଆତ୍ମାମାନଙ୍କୁ କ୍ରମେ ସେହି ଅନନ୍ତ ପ୍ରେମରେ ପ୍ଲାବିତ କରିବ ଓ ସେହି ଅବସ୍ଥାରେ ଅପୂର୍ବ ଐକ୍ୟ ଏବଂ ସମନ୍ୱୟ ସମ୍ଭବପର ହୋଇ ପାରିବ ।

"...and centred there God only to behold
and know and see
Till by exclusive conciousness of god

All self annihilated it shall make god its identity,
God all in all."

Coleridgeଙ୍କର ଏ ଭାବ ଭାରତୀୟ ବ୍ରହ୍ମବାଦ—"ଅହଂ ବ୍ରହ୍ମାଂସ୍ମି, ଅୟଂ ଆତ୍ମବ୍ରହ୍ମଂ"—ସହିତ ତୁଳନୀୟ । Carlyleଙ୍କର "Sartor Resartus"ରେ ଜର୍ମାନ transcendentalismର ଯଥେଷ୍ଟ ପ୍ରଭାବ ଦେଖାଯାଏ ଏବଂ ତା ସଙ୍ଗେ ସଙ୍ଗେ ତାଙ୍କର ଦାର୍ଶନିକ ରହସ୍ୟବାଦର ପରିଚୟ ମିଳେ ।

Francis Thompson, Coventry Patmore ଏବଂ Crashawଙ୍କ ଦ୍ୱାରା ପୂର୍ଣ୍ଣ ଭାବରେ ଅନୁପ୍ରାଣିତ ହୋଇଥିଲେ ଓ ଏ ଯୁଗରେ ମିଷ୍ଟିକ ଲେଖକଙ୍କ ଭିତରେ ତାଙ୍କର ସ୍ଥାନ ଉଲ୍ଲେଖ-ଯୋଗ୍ୟ । ତାଙ୍କର ଭକ୍ତିମୂଳକ ଲେଖାଗୁଡ଼ିକରେ ବିଶେଷ କରି ତାଙ୍କର "Odes" ଓ "The Hound of Heaven"ରେ ଏହି ଭକ୍ତିମୂଳକ ମିଷ୍ଟିସିଜମର ଆଭାସ ମିଳେ, ଯାହା Hopkinsଙ୍କର କେତେକ କବିତାରେ ଆମ୍ଭେମାନେ ଦେଖିବାକୁ ପାଉଁ । Thompson ଏବଂ Hopkinsଙ୍କର ରହସ୍ୟବାଦକୁ ଭାରତୀୟ ଉଜ୍ଜ୍ୱଳ ରସ ବା ମାଧୁର୍ଯ୍ୟ ରସ ସହିତ ତୁଳନା କରିହେବ ନାହିଁ, ବରଂ ଏ ଧରଣର ରହସ୍ୟବାଦ Rossetti ଏବଂ Patmoreଙ୍କଠାରେ ମିଳେ । ତେଣୁ ସେ Rossetti ଓ Patmoreଙ୍କଦ୍ୱାରା ଅନୁପ୍ରାଣିତ ହେଲେ ହି ତାଙ୍କଠୁଁ ଭିନ୍ନ ।

ବିଂଶ ଶତାବ୍ଦୀର ସାମାଜିକ ପରିବେଶ ମିଷ୍ଟିସିଜମ୍ ପକ୍ଷରେ ବିଶେଷ ଭାବରେ ଅନୁକୂଳ ନୁହେଁ । ବିଭିନ୍ନ ବୈଜ୍ଞାନିକ ଆବିଷ୍କାର ଓ ଉଦ୍ଭାବନ ଫଳରେ ଏବଂ ବିଜ୍ଞାନର ଅଗ୍ରଗତିଯୋଗୁଁ ଧର୍ମବିଶ୍ୱାସ ଏବଂ ଈଶ୍ୱର ବିଶ୍ୱାସର ହ୍ରାସ ଘଟିଅଛି । ଦୁଇଟି ମହାସମରର କଳଙ୍କମୟ ଇତିହାସ ଓ ତା'ର ପ୍ରଭାବ ମଣିଷର ସାମାଜିକ

ଓ ନୈତିକ ଜୀବନକୁ କେନ୍ଦ୍ରଚ୍ୟୁତ କରିଛି । ମନସ୍ତତ୍ତ୍ୱ ମଣିଷର ମନକୁ ସୂକ୍ଷ୍ମ ଭାବରେ ବିଶ୍ଳେଷଣ କରିବା ଫଳରେ ମଣିଷର ବ୍ୟକ୍ତିତ୍ୱ ବହୁଧା ବିଭକ୍ତ ହୋଇ ପଡ଼ିଛି । ଫଳତଃ ଈଶ୍ୱର ଓ ମଣିଷ ସମ୍ବନ୍ଧୀୟ କୌଣସି ତଥ୍ୟ ଆଜି ମନୁଷ୍ୟ ନିକଟରେ ରହସ୍ୟଜନକ ହୋଇ ରହିପାରୁ ନାହିଁ । ଫ୍ରଏଡ଼ଙ୍କ ସମୀକ୍ଷାମୂଳକ ମନସ୍ତତ୍ତ୍ୱ ମଣିଷକୁ ଅବଦମନ, ମାରଦ ଏବଂ ଭାବଗଣ୍ଠିର ସମଷ୍ଟି ବୋଲି ବର୍ଣ୍ଣନା କରିଛି ଏବଂ ତା' ଫଳରେ ମନୁଷ୍ୟଜୀବନର ରହସ୍ୟ ଓ ମୂଲ୍ୟ ସଂପୂର୍ଣ୍ଣ ଭାବରେ ନଷ୍ଟ ହୋଇଯାଇଛି । Jungଙ୍କର 'archetype' ବା 'myth' ବିଂଶ ଶତାବ୍ଦୀର ମହାଶୂନ୍ୟତାରେ ବିଭିନ୍ନ ସାହିତ୍ୟର ମାଧ୍ୟମରେ ନୂତନ ମୂଲ୍ୟବୋଧ ଆଣିବାର ପ୍ରଚେଷ୍ଟା କରିଛି । ତେଣୁ ଏ ଯୁଗରେ ଏକ ଆବେଗପୂର୍ଣ୍ଣ ଆତ୍ମାନୁଧ୍ୟାୟୀ-କେନ୍ଦ୍ରିକ ଚେତନାର ଅନ୍ୱେଷଣ ଆଧୁନିକ ଲେଖକ ଓ କଳାକାର ମାନଙ୍କର ସର୍ବଶ୍ରେଷ୍ଠ ଦାୟିତ୍ୱ ହୋଇପଡ଼ିଛି । ଏହାଫଳରେ Expressionism, Existentialism, Surrealism ପ୍ରଭୃତି ବିଭିନ୍ନ ଦାର୍ଶନିକ ଏବଂ ସାହିତ୍ୟିକ ଭଙ୍ଗୀର ଉଦ୍‌ଭବ ହୋଇଛି ।

ଏଠାରେ ମନେ ରଖିବାର କଥା ଯେ ମିଷ୍ଟିକର ଭାଷା ପ୍ରତୀକବାଦୀର ଭାଷାପରି ପ୍ରତୀକଧର୍ମୀ ହୁଏ । ରହସ୍ୟବାଦୀ କବି ବା ଲେଖକ ନିଜର ଅନୁଭୂତିକୁ ପ୍ରକାଶ କଲାବେଳେ ତା'ର ପ୍ରକାଶଭଙ୍ଗୀ ସେହି ଅନୁଭୂତିର ସ୍ୱାତନ୍ତ୍ର୍ୟ ଏବଂ ଏକକତା ଲାଗି ପ୍ରତୀକଧର୍ମୀ ହୋଇପଡ଼େ । ବିଶେଷକରି ଆଧୁନିକ ଯୁଗର ରହସ୍ୟବାଦୀ ଲେଖକମାନଙ୍କ ସମ୍ବନ୍ଧରେ ଏ କଥା ଯେ ସତ୍ୟ, ତାହା D. H. Lawrence ବା W. B. Yeatsଙ୍କର ଲେଖାର ଆଲୋଚନାରୁ ସ୍ପଷ୍ଟ ହୁଏ । Lawrenceଙ୍କ ଲେଖାରେ ଜଣେ ମିଷ୍ଟିକର ଚରମ ଅନୁଭୂତିର ଶ୍ରେଷ୍ଠ ପ୍ରକାଶ ଦେଖିବାକୁ ମିଳେନାହିଁ । ମାତ୍ର ସେହି କାମ୍ୟ

ମୁହୂର୍ତ୍ତର ଅନୁଭବ ପାଇଁ ଏକ ବ୍ୟାକୁଳତା ଦୃଷ୍ଟ "Kangroo"ରେ ତାଙ୍କର ମିଷ୍ଟିକ ଦୃଷ୍ଟିକୋଣର ପରିଚୟ ଦେବାକୁ ଯାଇ ସେ What man passionately wants is his living wholeness of his living unison......my soul is an organic part of the great human soul. ଏଠାରେ ଆହୁରି ମଧ୍ୟ ଲକ୍ଷ୍ୟ କରିବାର କଥା ଯେ, Lawrenceଙ୍କ ଉପନ୍ୟାସଗୁଡିକରେ mysticismର ଏକ ନୂତନ ଦିଗ ଆବିଷ୍କୃତ ହେଲପରି ମନେ ହୁଏ। ତାଙ୍କ ଲେଖାରେ ମୁଖ୍ୟ ସମସ୍ୟାରୂପେ ପ୍ରଦର୍ଶିତ ହୋଇଥିବା ପୁରୁଷ ଓ ସ୍ତ୍ରୀର ଉଚ୍ଚତମ ସମ୍ପର୍କର ସମ୍ଭାବନାକୁ ସେ ଜଣେ mystic ସ୍ତରରୁହିଁ ଦେଖିଛନ୍ତି। ତେଣୁ ସେ ଅନେକ ସମୟରେ ପ୍ରଚାରକଧର୍ମି ହୋଇ ପଡ଼ିଛନ୍ତି। ଅବଶ୍ୟ Lawrenceଙ୍କ ଲେଖାରେ ଏକ ପ୍ରକାର ବିଶ୍ଳେଷଣାତ୍ମକ ପ୍ରବୃତ୍ତି ପ୍ରଚ୍ଛନ୍ନ ରହିଛି ଏବଂ ଜଣେ ଶ୍ରେଷ୍ଠ mysticର ଦିବ୍ୟଜ୍ଞାନ (vision) ପରି ଏହା ଏତେ ସହଜଲବ୍ଧ ବୋଲି ମଧ୍ୟ ପ୍ରତୀୟମାନ ହୁଏ ନାହିଁ। ହୁଏତ ନିର୍ଦ୍ଦିଷ୍ଟ କେତେକ ବିଶ୍ୱାସକୁ ପ୍ରତିପାଦନ କରିବାର ତାଙ୍କର ବ୍ୟାକୁଳତା ଓ ଉଦ୍ୟମ ମୂଳତଃ ଏକ mystic ପ୍ରତିଭାକୁ କିଞ୍ଚିତ ଦୁର୍ବଳ କରି ପକାଉଛି।

ଇଂରାଜ ସାହିତ୍ୟରେ ସମସାମୟିକ ୟୁରୋପର ଏପରି ବିଚ୍ଛିନ୍ନ ଏବଂ ବିଭକ୍ତ ଜୀବନଯାତ୍ରାର ପ୍ରଭାବଦ୍ୱାରା ଐକ୍ୟ ଏବଂ ସମନ୍ୱୟର ଦର୍ଶନ ପ୍ରତି ଉଦ୍‌ବେଗ ଏବଂ ବ୍ୟାକୁଳତା ପ୍ରକାଶ ପାଇଛି। କିନ୍ତୁ mysticର ସେ ଅନ୍ତର୍ଦୃଷ୍ଟି ବା ସେହି ଦିବ୍ୟଦର୍ଶନ ଆଜି ସମ୍ଭବପର ହୋଇ ପାରୁନାହିଁ। ତେଣୁ ବିଶିଷ୍ଟ କବି Yeats ଏକ ନିଗୂଢ଼ ପ୍ରଶ୍ନ ପଚାରନ୍ତି— How can we know the dancer from the dance ?" ତାଙ୍କର କବିତାଗୁଡ଼ିକରେ ଆତ୍ମାର ଅନ୍ୱେଷଣ ଏବଂ ଅନୁସନ୍ଧାନ ପୂର୍ଣ୍ଣ ଭାବରେ ଅନୁଭବ କରାଯାଏ। "The Second

Coming"ରେ Yeats କିଛି ଭାବରେ ରହସ୍ୟବାଦୀ ହୋଇ ପଡ଼ିଛନ୍ତି । ବିଭିନ୍ନ ଦେଶର ଶାସ୍ତ୍ର, ଦର୍ଶନ, ସାହିତ୍ୟ ମଧ୍ୟରୁ ସେ ସମନ୍ୱୟ ଏବଂ ଐକ୍ୟ ସୃଷ୍ଟି କରିବା ପାଇଁ ଅନୁସନ୍ଧିତ୍ସୁ ହୋଇଛନ୍ତି । କିନ୍ତୁ 'Root and Flower'ର ଲେଖକ L. H. Myers ଓ 'Four Ouartets'ର ଲେଖକ T. S. Eliotଙ୍କୁ ଛାଡ଼ିଦେଲେ ଏ ଯୁଗର ଅନ୍ୟ କୌଣସି ଲେଖକଙ୍କଠି ଏ mystic ଅନୁଭୂତି ମିଳେ ନାହିଁ । Myersଙ୍କ ଗଦ୍ୟ ଲେଖାରେ ମଣିଷର ମଣିଷ ସହିତ ସଂପର୍କ ଏବଂ ଏ ଯାନ୍ତ୍ରିକ, ବୈଷୟିକ ଓ ପାର୍ଥିବ ସଭ୍ୟତାରେ ଜୀବନ ଓ ସୃଷ୍ଟିର ପରମ ସତ୍ୟ ଅନୁଭବ କରିବାରେ ନିଜକୁ ଏପରି ଭାବରେ ନିୟୋଜିତ କରିଛନ୍ତି ଯେ ତାଙ୍କର ଉପନ୍ୟାସ-ଗୁଡ଼ିକରେ ଅଧିକାଂଶ ସମୟରେ ସେ mystic ହୋଇ ପଡ଼ିଛନ୍ତି । କିନ୍ତୁ T. S. Eliot ଏ ଯୁଗର ସର୍ବଶ୍ରେଷ୍ଠ mystic । ତାଙ୍କର mysticism ଗମ୍ଭୀର ଏବଂ ନୈଷ୍ଠିକ ଧର୍ମବୋଧ ଏବଂ ଆଧ୍ୟାତ୍ମିକ ଭାବପୂର୍ଣ୍ଣ । T. S. Eliotଙ୍କର ଏ ରହସ୍ୟବାଦ ଭାରତୀୟ ଏବଂ ପ୍ରାଚ୍ୟ ଦର୍ଶନବାଦଦ୍ୱାରା ବିଶେଷ ଭାବରେ ପ୍ରଭାବିତ । ଶ୍ରୀ ଅରବିନ୍ଦଙ୍କ ପରି Eliot ' Still Point"ର ପରିକଳ୍ପନା କରିଛନ୍ତି । ଏହାର ବୌଦ୍ଧଧର୍ମର ରହସ୍ୟବାଦ ସଙ୍ଗେ ମଧ୍ୟ ସାମଞ୍ଜସ୍ୟ ରହିଛି । ପ୍ରାଚ୍ୟ ରହସ୍ୟବାଦରେ ଯାହାକୁ ସମାଧି କୁହାଯାଏ ବା ବୌଦ୍ଧ ଧର୍ମରେ ଯାହାକୁ "ସାନ୍ନଭେଦାସ୍ୱିତ ନିରୋଧ" ବୋଲି କୁହାଯାଏ; ତାହାହିଁ Eliotଙ୍କର "Still point" । ଏହି ଅବସ୍ଥାରେ " ......the impossible union of spheres of existence is actual Here the past and future are conquered and reconciled. । Eliot ବିଭିନ୍ନ ଅବସ୍ଥାରେ 'multifoliate rose ଏବଂ lady of the garden' ପ୍ରଭୃତିଙ୍କର କଳ୍ପନାରେ ତତ୍ତ୍ୱଦର୍ଶନ ଲାଭ କରିଥିଲେ ।

କିନ୍ତୁ 'Four Quartety'ରେ ସେ ସଚ୍ଚିଦାନନ୍ଦ ଅନୁଭବ କରିବା ସଙ୍ଗେ ସଙ୍ଗେ ଅପୂର୍ବ, ଅନନ୍ତ, ଐଶ୍ବରିକ ଏବଂ ଆଧ୍ୟାତ୍ମିକ ଐକ୍ୟ ସମ୍ବନ୍ଧ ଅନୁଭବ କରନ୍ତି—

At the still point of the turning world. Neither flesh nor fleshless;
Neither from nor onwards......except for the point, the still point

ସେହି ଅବସ୍ଥାରେ 'the fire and the rose are one' ଏବଂ ଏହା ସେହି ମହେନ୍ଦ୍ର ଲଗ୍ନ ଯେତେବେଳେ ଆତ୍ମା ପରମାତ୍ମାରେ ବିଲୀନ ହୋଇଯାଏ ; ଜୀବନ ଏବଂ ସୃଷ୍ଟିରେ ସମନ୍ୱୟ ସ୍ଥାପନ ହୁଏ ଓ Danteଙ୍କ ପରି mystic କହିଉଠେ, 'ତୁମରି ଇଚ୍ଛା ହିଁ ପରମ ଶାନ୍ତି । ଏବଂ ଏହି ମୁହୂର୍ତ୍ତଟି ଉପନିଷଦ୍‌ର 'ତତ୍ତ୍ୱମସି'ର ସତ୍ୟ ଏବଂ ଅନୁଭୂତିକୁ ପ୍ରକଟିତ କରେ ।



ମୁଦ୍ରାକର—ଚିନ୍ତାମଣି ମିଶ୍ର, ନବଜୀବନ ପ୍ରେସ, କଟକ-୨